ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର

# କ୍ରୀଡ଼ା ପ୍ରତିଯୋଗିତା



# ଦୌଡ ପ୍ରତିଯୋଗିତା

(ଗଳ୍ପ ସଂକଳନ)

ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର



ପଶ୍ଚିମା ପବ୍ଲିକେଶନ୍ସ
[illegible], ୟୁନିଟ - ୬, ଭୁବନେଶ୍ୱର -୧

# ଦୌଡ ପ୍ରତିଯୋଗିତା

(ଗଳ୍ପ ସଂକଳନ)

ଲେଖକ: ଶ୍ରୀ ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର, କଣ୍ଟିପୁର
ବିଂଝାରପୁର, ଯାଜପୁର

ସ୍ୱତ୍ୱ : ପୁଷ୍ପଲତା ଧଳ ମହାପାତ୍ର

ପ୍ରକାଶକ: ପଶ୍ଚିମା ପବ୍ଲିକେଶନ୍ସ, ୮, ୟୁନିଟ୍-୬
ଭୁବନେଶ୍ୱର-୧
ସଂସ୍କରଣ: ଫେବୃଆରୀ, ୧୯୯୯
ପ୍ରଚ୍ଛଦ: ରାଜେଶ ନାୟକ
ମୂଲ୍ୟ: ୪୦.୦୦

Short Story Collection By
**Rajyabardhan Dhal Mahapatra**
Kantipur, Binjharpur.
Jajpur.



Published By:PASCHIMA
Publication Bhubaneswar.

First Edition-February, 1999

Cover Design: Rajesh Nayak

Price: Rs.40.00

## ମୁଁ କୃତଜ୍ଞ ସେମାନଂକ ପାଖରେ -

ଏଥିରେ ସନ୍ନିବେଶିତ ସମସ୍ତ ଗଳ୍ପ ଓଡିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । ମୋତେ ମୋର ପ୍ରିୟ ପାଠକ ଓ ଶୁଭେଚ୍ଛୁମାନଂକ ପାଖରେ ଆଦୃତ କରିବାର ସୁଯୋଗ ଦେଇଥିବାରୁ ସେ ସମସ୍ତ ପତ୍ର ପତ୍ରିକାର ସଂପାଦକମାନଂକ ପାଖରେ ମୁଁ କୃତଜ୍ଞ ।

ଦୀର୍ଘ ଏକ ଯୁଗ ପରେ ମୋର ଆଉ ଏକ ଗଳ୍ପ ସଂକଳନର ପ୍ରକାଶ ପାଇବା ଉପରେ ଯେଉଁମାନେ ଗୁରୁତ୍ୱ ଆରୋପ କରି ମୋତେ ପ୍ରେରଣା ଦେଇଛନ୍ତି, ସେହି ସତୀର୍ଥ ଅନୁଜମାନେ ହେଲେ ବିଜୟ ପ୍ରଧାନ, ପ୍ରମୋଦ ପଣ୍ଡା, ଭାରତ ମାଝୀ ଓ ପରମେଶ୍ୱର ମୁଣ୍ଡ । ମୁଁ ସେମାନଙ୍କ ନିକଟରେ ଋଣୀ ଏବଂ ପରମେଶ୍ୱର ମୁଣ୍ଡ ଏହାର ଅଂଗସଜ୍ଜା ଓ ମୁଦ୍ରଣ ପରିପାଟୀ ପାଇଁ ଅକ୍ଳାନ୍ତ ପରିଶ୍ରମ କରି ମୋତେ ବିଶେଷ ଭାବରେ ଋଣୀ କରିଛନ୍ତି ।

ପ୍ରକାଶକ ଅଶୋକ ମହାନ୍ତିଙ୍କ ପାଖରେ କୃତଜ୍ଞ ।

ଭଲ ପାଇବାର ପୃଥକ୍ ପରିଭାଷା
ଶିଖାଇଥିବା ପତ୍ନୀ ଲିଲିଂକର
କିଛି ନ ମାଗିଥିବା ହାତରେ...

ରାଜୁ

# ଗଳ୍ପ - କ୍ରମ

# ଧାଡ଼ି ବାହାରେ ଏକା

ଗୁରୁପଦ ଫିଜିକ୍ସ୍ ଅନର୍ସରେ ବି.ଏସ୍.ସି.ପାଶ୍ କରି ଆସିଥିଲା ଇଂରାଜୀରେ ଏମ୍.ଏ. ପଢ଼ିବାକୁ । ସେ ଯେତେବେଳେ ହଷ୍ଟେଲରେ ମୋ ରୁମ୍ ମେଟ୍ ହେଲା ଏବଂ ମୁଁ ଜାଣିଲି ସେ ବି.ଏସ୍.ସି. ପାଶ କରି ଆସିଛି ଏମ୍.ଏ. ପୁଣି ଇଂରାଜୀରେ ପଢ଼ିବ ମୁଁ ହସିଥିଲି, ତାକୁ ପଚାରିଲି ଏମିତି ଏକ ଅଜବ ନିଷ୍ପତ୍ତି କାହିଁକି ନେଲୁ ? ସେ କହିଲା ଫିଜିକ୍ସ୍‌ରେ ଦ୍ୱିତୀୟ ଶ୍ରେଣୀ ଅନର୍ସରେ ଏମ୍.ଏସ୍.ସି. ପାଇଁ ସିଟ୍ ମିଳିଲାନି,ଆର୍ଟସର ଅନ୍ୟ ବିଷୟରେ ମଧ ଭିତ,ଇଂରାଜୀରେ ସିଟ୍ ମିଳିଗଲା, ପଶି ଆସିଲି । ମୋତେ କୌଣସି ମତେ ଆଉ ଦୁଇତିନି ବର୍ଷ ଛାତ୍ର ଜୀବନ ଜାରୀ ରଖିବାକୁ ପଡ଼ିବ ତା' ଭିତରେ ଚାକିରୀଟିଏ ଖୋଜି ନେବି ବୋଲି ଭାବୁଛି । ଘରେ ବସି ରହିଲେ କିଛିତ କରି ହେବନି । ତା'ପରେ ଘରେ ଆମର ଅଭାବି ସଂସାର । କର୍ମକର୍ମାଣୀ ଯଜମାନୀ କରି ବାପା କୌଣସି ମତେ ଘର ଚଳାଇ ନେଉଛନ୍ତି । ଘରୁ ଯିବାଆସିବା କରି ବିନା ଖର୍ଚ୍ଚରେ ବି.ଏସ୍.ସି.ଟା ସାରି ଦେଲି । ଏଠି ଟିଉସନ୍ କିମ୍ବା କୌଣସି ପାର୍ଟଟାଇମ୍ ଚାକିରୀ କରି ପଢିବା ସହ ଚାକିରୀଟିଏ ଖୋଜି ହେବ ଏଇ ଭରସାରେ ଏଥିରେ ନାଁ ଲେଖାଇ ଦେଇଛି । ମୁଁ କେଉଁ ଇଂରାଜୀ ଅଧ୍ୟାପକ ହେବାକୁ ଅଭିଳାଷ ରଖିଛି ଯେ ମାର୍କ ପାଇଁ ଚିନ୍ତିତ ହେବି କିମ୍ବା ଗଭୀର ଅଧ୍ୟୟନ କରିବି ?

ଗୁରୁପଦର ସ୍ପଷ୍ଟ ବାଦିତାରେ ମୁଁ ଖୁସି ହୋଇଥିଲି । ଦରକାର ପଡ଼ିଲେ ମୋର ବହିପତ୍ର, ନୋଟ୍ ଇତ୍ୟାଦି ନେଇ ସେ ପଢାପଢି କରିପାରେ ବୋଲି ତାକୁ ପ୍ରସ୍ତାବ ଦେଇଥିଲି ।

ମୋ ପ୍ରସ୍ତାବରେ ସେ ସେତେ ଆଗ୍ରହ ନ ଦେଖାଇ କହିଲା ପଢ଼ିବା ବେଳ ଆସୁ,ବହିପତ୍ର ନୋଟ୍ ଇତ୍ୟାଦି ନିଶ୍ଚୟ ନେବି । ମୋର ଏଇନେ ପ୍ରଥମ ଚିନ୍ତା ଟିଉସନ୍ କିମ୍ବା ଅନ୍ୟ କିଛି ବ୍ୟବସ୍ଥା କରି ହଷ୍ଟେଲର ଖର୍ଚ୍ଚ ଉଠାଇବା ।

ଗୁରୁପଦ ଏପଟେ ସେପଟେ କିଛିଦିନ ବୁଲିଲା ଟିଉସନ ଯୋଗାଡ଼ କରିବା ପାଇଁ । ସବୁଦିନ ରାତି ନଅଟା ଦଶଟାରେ ଫେରିବ ଶୁଖିଲା ମୁହଁରେ, ସବୁଦିନ ମୁଁ ପଚାରେ କ'ଣ କିଛି ମିଳିଲା ? ସେ ଖୁବ୍ ନୈରାଶ୍ୟରେ ଉତ୍ତର ଦେବ-ନା । ଦେଖୁଛି ମୋତେ ପଢ଼ାପଢ଼ି ବନ୍ଦ କରି ଫେରି ଯିବାକୁ

ପଡ଼ିବ । ମୁଁ ତାକୁ ସାନ୍ତ୍ୱନା ଦେଇ କହେ ଏତେ ବ୍ୟସ୍ତ କାହିଁକି ହଷ୍ଟେଲତ ମିଳିଯାଇଛି । ମିଲ୍ ପଡୁଛି ହଷ୍ଟେଲରେ । ଦୁଇଚାରି ମାସ ଯାଏ ହଷ୍ଟେଲ ପଇସା ନ ହେଲେ ବି ମିଲ୍ ବନ୍ଦ ହେବନି ଏଠାରେ ଚେଷ୍ଟାକର ନିଶ୍ଚୟ କିଛି ମିଳିଯିବ ।

ଦିନେ ରାତିରେ ସେ ହଷ୍ଟେଲକୁ ଫେରିବା ବେଳକୁ ଖୁବ୍ ଖୁସି ଜଣା ପଡୁଥିଲା । ତାର ଖୁସି ଦେଖି ମୁଁ ଅନୁମାନ କରିନେଲି ଯେ ଆଜି ନିଶ୍ଚୟ କିଛି ଯୋଗାଡ଼ ହୋଇଯାଇଛି । ପଚାରିଲି କ'ଣ କିଛି ମିଳିଲା କି ?

ହଁ ।

କ'ଣ ଟିଉସନ୍ ?

ନା- ।

ଆଉ ?

ଚାକିରୀ ବୋଲି କହିପାରୁ ।

ତା'ହେଲେ ତ ଖୁସିର କଥା-ମିଠା କାହିଁ ?

ହୁଃସ୍ -ଏଇଟା ଗୋଟେ ଚାକିରୀ ଯେ ମିଠା, ତେବେ ଟିଉସନ କରିବା ଅପେକ୍ଷା ଭଲ ।

କି ଚାକିରୀ ?

ସହ ସଂପାଦକ ।

କେଉଁଥିରେ ?

ଏଠିକା ଖବର କାଗଜ 'ଜାଗୃତି'ରେ ।

କେତେ ଦେବେ ?

କେତେ ଆଉ ଏଇ ତିନିଶ' ଟଙ୍କା ଏଇନେ ଦେବେ ବୋଲି କହୁଛନ୍ତି, କାମଦେଖି ପରେ ବଢ଼ାଇ ପାରନ୍ତି ।

ଯାହା ହେଉ ଏବେତ ଚଳିଯାଇ ହେବ । ତୋ'ର ଚଳିବାଭଳି ଖଣ୍ଡେ ଚାକିରୀ ଦରକାର ଥିଲା । ତୁ କେଉଁ ଏଥିରେ ସବୁଦିନ ରହିବୁ ଯେ ।

ହଁ ଚଳିଯାଇ ହେବ ଯେ ହେଲେ ଖବର କାଗଜ ବାଲା ତିନିଶହ ଦେଇ ଯାଇ ତିନି ହଜାର ଆଦାୟ କଲାଭଳି ଲାଗୁଛି ।

କେମିତି ?

ସମୟରେ ।

କେତେ ସମୟ ଦେବୁକି ?

ସେମାନେ କହୁଥିଲେ ଦଶ ରୁ ପାଞ୍ଚ । ମୁଁ ମୋ ପଢ଼ାପଢ଼ି କଥା କହି ବା'ରରୁ ସାତ କରିଛି । ଆମରତ ସକାଳୁ କ୍ଲାସ ସାରି ଅନ୍ତତଃ ଯାଇହେବ ।

କ୍ଲାସ ସାରି ତରତରରେ ହଷ୍ଟେଲରେ ମୁଠେ ଖାଇଦେଇ ଗୁରୁପଦ ବାହାରିଯାଏ ପ୍ରେସକୁ । ଫେରେ ରାତି ନଅ କି ଦଶରେ । ଲୁମରୁ ଧୁଆ ଧୋଇ ହୋଇ ହଷ୍ଟେଲ କ୍ୟାଣ୍ଟିନରୁ ମିଲ୍ ଖାଇ ଦେଇ ବଡ଼ ବିଷର୍ଣ୍ଣ ଓ ଅବସ ଭାବରେ ବିଛଣାରେ ଗଡ଼ିପଡ଼େ ।

ଥରେ ତାକୁ ପଚାରିଲି - ତୋ'ର ଏତେ ଡେ଼ରି କାହିଁକି ହେଉଛି ?

ସେ ଉତ୍ତର ଦିଏ-ମୁଁ କହିଥିଲି ନା ତିନିଶହଦେଇ ତିନିହଜାରର କାମ ଆଦାୟର ଯନ୍ତାଇଏ ।

ନିଉଜ୍ ଏଡିଟ୍‌କରି କେଉଁ ନିଉଜ୍ କେଉଁଠି ରହିବ ଠିକକଲେ, ସେତିକିରେ ଭଲ କାମ ଛିଣ୍ଡନ୍ତା । ପେପର ପ୍ରିଣ୍ଟିଂ ହୋଇ ବାହାରିବା ଯାଏ ଅପେକ୍ଷା କଲେ ଯାଇ ଛୁଟି । ବେଳେ ବେଳେ ଭାବୁଛି ଛାଡ଼ିଦେବି ପୁଣି ଭାବୁଛି ଛାଡ଼ି ଦେଲେ ଚଳିବି କେମିତି ?

ଧିରେ ଧିରେ କାମ ସହ ଅଭ୍ୟସ୍ତ ହୋଇଗଲା ଗୁରୁପଦ । ପ୍ରଥମେ ପ୍ରଥମେ ଅତ୍ୟଧିକ କାର୍ଯ୍ୟ ପାଇଁ ତା'ର ଯେଉଁ ଅଭିଯୋଗ ରହୁଥିଲା ରହିଲା ନାହିଁ, ବିଳମ୍ବରେ ଫେରି ମଧ ଟିକେ ଟିକେ ବହିପତ୍ର ଦେଖା ଦେଖି କଲା ।

ଦିନେ ଆସି କହିଲା- ସମ୍ପାଦକ କହୁଛନ୍ତି ଖାଲି ନିଉଜ ଏଡ଼ିଟିଂ ନୁହେଁ କିଛି କିଛି ନିଉଜ ରିପୋଟିଂ ମଧ କଲେ-ଦେଖିବ ଚାର୍ମ ପାଇବ, ଖ୍ୟାତି ମଧ । ମୋର ଏବେ ପଢ଼ାପଢ଼ି ସମସ୍ୟ ତେଣୁ କିଛି ଉତ୍ତର ଦେଇ ପାରିନି, ପରେ ନିଷ୍ପତ୍ତି ନେଇ ଜଣାଇବି ବୋଲି କହିଛି ।

ସମ୍ପାଦକ ତାକୁ କି ମାୟାଜାଲରେ ପକାଇ ଦେଲେ କେଜାଣି- ସେ ରାଜି ହୋଇଗଲା ରିପୋଟିଂ ପାଇଁ 'କ୍ୟାମ୍ପସ କାପସୁଲ'ନାମକ ସମ୍ବାଦ ସ୍ତମ୍ଭ ଟିଏ ଲେଖିଲା ପ୍ରଥମେ ପ୍ରଥମେ ସେ ସ୍ତମ୍ଭରେ ତା ନାଁ ରହୁ ନ ଥିଲା । ମାତ୍ର ସେ ସ୍ତମ୍ଭର ଆକର୍ଷଣ କଲେଜ ଓ ଇଉନିଭରସିଟିରେ ଏତେ ବଢ଼ିଗଲା ଯେ ସପ୍ତାହାନ୍ତର ସେହି ସ୍ତମ୍ଭ ପାଇଁ ଅଜସ୍ର ଚିଠି ଆସିଲା ସଂପାଦକଙ୍କ ପାଖକୁ । କାଗଜର କାଟତି ମଧ ଆଶାନୁରୂପକ ଭାବେ ବୃଦ୍ଧି ପାଇଥିଲା । ତେଣୁ କିଛି ଦିନ ପରେ ସେ ସ୍ତମ୍ଭରେ ତା ନାଁ ପ୍ରକାଶ ପାଇଲା ।

ବି.ଏସ୍.ସି. ରୁ ଇଂରାଜୀ ଏମ୍.ଏ. ପଢ଼ିବା ପାଇଁ ସେ ଆସିଥିବାରୁ ମୁଁ ହସିଥିଲି ସିନା ମାତ୍ର ଯେତେବେଳେ ଏମ୍.ଏ. ର ରେଜଲଟ୍ ବାହାରିଲା ଗୁରୁପଦ ଥିଲା ମୋଠାରୁ କାହିଁ କେତେ ଉପରେ । ତାର ଏ ଆଶ୍ଚର୍ଯ୍ୟ ଧରଣର ଉନ୍ନତିଦେଖି ମୁଁ କାବା ହୋଇ ପଚାରିଲି ତୋର ସଫଳତାର ରହସ୍ୟ କଣ ? ସେ ଦିନ ଗୋଟେ ପକ୍‌କା ସାମ୍ବାଦିକ ପରି ଗୁରୁପଦ ମୁରୁକି ହସି ହାତରେ ଧରିଥିବା ଖବର କାଗଜଟିକୁ ଦେଖାଇ କହିଲା- 'କ୍ୟାମ୍ପସ କାପସୁଲ'ରେ ମୁଁ ଗୋଟେ ବୋମା ରଖିଥିଲି ନିଉଜ୍ ପାଇଁ- 'ଭି.ସି.ବୋମା' । ଯଦି ସେ ବୋମା ଫୁଟି ଥାଆନ୍ତା । ମୋ ସ୍ତମ୍ଭରେ ତେବେ ଭି.ସି.ଙ୍କ ଆସନ ଟଳମଳ ହୋଇଥାନ୍ତା । ସେହି ସମ୍ବାଦକୁ ନେଇ ଭି.ସି.ଙ୍କ ସହ ବାରଗେନ୍ କରିଥିଲି ମୋ ରେଜଲ୍‌ଟ ପାଇଁ ।

ମୁଁ କହିଲି - ଯା' ହେଉ ତୁ ଭଲ ମଉକାଟିଏ ମାରିନେଲୁ । ଏବେ ଆରାମ୍‌ରେ

ଅଧ୍ୟାପକଟିଏ ହୋଇପାରିବୁ । ପି.ଏସ୍.ସି. ବି ପାଇଯିବୁ ମ୍ୟାଟ୍ରିକ୍, ଆଇ.ଏସ.ସି. ଓ ଏମ.ଏ.ର କ୍ୟାରିଅରର ମାର୍କିଂରେ ।

ସେ ଦିନ ସେ କୁଟିଳ ହସଟିଏ ହସି କହିଲା-ମୁକ୍ତ ଜୀବିକାର ବାଦଶାହା ନ ହୋଇ କାହିଁକି ଛନ୍ଦି ହେବି ଅଯଥା ଜଞ୍ଜାଳରେ । ଏ ବୃତ୍ତି ଭଲ ଅଛି ଚଳିତ ଯାଉଛି ଏବେ ।

ମୁଁ ଚାକିରୀ ଖୋଜିବା ଭିତରେ ଜଣେ ସାମ୍ବାଦିକ ଭାବରେ ଗୁରୁପଦ ଖୁବ୍ ନା କମାଇ ସାରିଥିଲା । ତା'ର ସମ୍ବାଦକୁ ନେଇ ବିଧାନ ସଭାରେ ଝଡ଼ ଉଠିଛି, ସରକାର ଟଳମଳ ହୋଇଛି, ପ୍ରଶାସନ ଅଡୁଆରେ ପଡ଼ିଛି । ବେଳେ ବେଳେ ଗୁରୁପଦର ସମ୍ବାଦ ନୁହେଁ ଗୁରୁପଦ ନିଜେ ବି ବନିଯାଏ ସମ୍ବାଦ କେବଳ ନିଜ ଖବର କାଗଜରେ ନୁହେଁ ସମସ୍ତ ଆଞ୍ଚଳିକ ଓ ଜାତୀୟ ସମ୍ବାଦ ପତ୍ର ମାନଙ୍କରେ ।

ମୁଁ ଚାକିରୀରେ ଜଏନ୍ କରିବାର କିଛିବର୍ଷ ପରେ ଶୁଣିଲି ଗୁରୁପଦ ଛିଡ଼ା ହେଉଛି ନିର୍ବାଚନରେ । ଜଣେ ବିଧାୟକଙ୍କ ମୃତ୍ୟୁ ଯୋଗୁଁ ହେଉଥିବା ଉପନିର୍ବାଚନରେ ଶାସକ ଦଳ ତରଫରୁ ଗୁରୁପଦ କୁ ଟିକେଟ ମିଳିଗଲା । ତା'ର ସାମ୍ବାଦିକ ବୃତ୍ତିର ଖ୍ୟାତିକୁ ପୁଞ୍ଜି କରି ଜଣେ ଟାଣୁଆ ବିରୋଧି ଦଳର ନେତାକୁ ପରାସ୍ତ କରିସେ ଜିତିଗଲା । ସେହି ବିଜୟ ପରେ ସେ ଆଉ କେବେ ଫେରି ଚାହିଁନି ପଛକୁ । ସାମ୍ବାଦିକ ଭାବେ ଯେତିକି ହଟ ଚମଟ ସୃଷ୍ଟି କରି ପାରିଥିଲା ତା'ଠାରୁ ଅଧିକ ହୋ-ହଲ୍ଲା ସୃଷ୍ଟି କରି ଦେଲା ରାଜନୀତିରେ । ପ୍ରଥମ ଥର ଏମ୍.ଏଲ.ଏ. ହେବା ଭିତରେ ଗୁରୁପଦ ବାହା ହୋଇ ପଡ଼ିଲା ଜଣେ ଭୂତପୂର୍ବ ମନ୍ତ୍ରୀ ଙ୍କ ଝିଅକୁ । ଖର୍ଚ୍ଚକାଟ ଓ ମିତ ବ୍ୟୟିତାର ବାର୍ତ୍ତା ପ୍ରଚାରକୁ ସରକାରୀ ଯାନ ବାହନର ଅଯଥା ବ୍ୟବହାର ନିଷିଦ୍ଧ, ବିବାହ ବ୍ରତ ଇତ୍ୟାଦିରେ ଆଡ଼ମ୍ବର ପୂର୍ଣ୍ଣ ଖର୍ଚ୍ଚ କାଟ ଇତ୍ୟାଦି କଥା କହୁଥିବା ସରକାର ତା'ବାହାଘର ପାଇଁ ଅନେକ ସମାଲୋଚନାର ଶରବ୍ୟ ହୋଇଥିଲା । କେତେକ ସମ୍ବାଦ ପତ୍ର ତ ଛାପିଲେ-'' ଏ ଶତାବ୍ଦୀର ଦ୍ୱିତୀୟ ବ୍ୟୟ ବହୁଳ ବିବାହ ଉତ୍ସବ- ଆଉଜଣେ ଯୁବରାଜ ଚାର୍ଲସ'' ଜଣେ ଧୁରୀଣ ନେତାଭଳି-'' ଏ ସବୁ ବିରୋଧି ଦଳର ଅପପ୍ରଚାର'' ନାମକ ଏକ ଛୋଟିଆ ବିବୃତିରେ ସେ ଉଡ଼ାଇ ଦେଇ ଥିଲା ସେ କଥାକୁ । ଅବଶ୍ୟ ସେତେବେଳକୁ ବିଧାନସଭା ଅଧିବେଶନ ଆରମ୍ଭ ହେବାକୁ ବହୁତ ଡେ଼ରିଥାଏ ଏବଂ ଅଧିବେଶନ ଆରମ୍ଭ ହେବା ବେଳକୁ ଏ ଘଟଣା ଏକ ଇସ୍ୟୁ ହେବାଭଳି ଗୁରୁତ୍ୱ ମଧ ହରାଇସାରିଥିଲା ।

ଦ୍ୱିତୀୟ ଥର ନିର୍ବାଚନରେ ଜିଣି ଗୁରୁପଦ ମନ୍ତ୍ରୀ ହେଲା ଏବଂ ଆମ ବିଭାଗର ମନ୍ତ୍ରୀ । ସେ

ଯେଉଁଦିନ ମନ୍ତ୍ରୀ ପଦ ପାଇଲା ମୁଁ ଖୁସିରେ ମୋର ସମସ୍ତ ସହକର୍ମୀଙ୍କୁ କହିଥିଲି- ମୋର ଜଣେ ଅନ୍ତରଙ୍ଗ ସାଙ୍ଗ ଆଜି ଆମ ବିଭାଗର ମନ୍ତ୍ରୀ । ତା'ସହ ମୋର ଅଂତରଙ୍ଗତା ଦେଖାଇବା ପାଇଁ ମୁଁ ମୋର କଲେଜ ସମୟର ଫଟୋ ଆଲବମ୍ ଖୋଜି ବାହାର କରିଥିଲି ଗୁରୁପଦ ସାଙ୍ଗରେ ଥିବା ମୋର ଫଟୋ ଗୁଡ଼ିକୁ । ଏକଥା କରିବାର ପ୍ରଛନ୍ନ ଉଦ୍ଦେଶ୍ୟ ଥିଲା ଯେହେତୁ ବିଭାଗୀୟ ମନ୍ତ୍ରୀ ମୋର ସାଙ୍ଗ, ତେଣୁ ସହକର୍ମୀ ଓ ଉପରିସ୍ଥ ମାନଙ୍କର ମୋ ପ୍ରତି ସ୍ୱାଭାବିକ ସମ୍ମାନ ଓ ଭୟ ରହିବ ।

ମଝିରେ ମଝିରେ ଗୁରୁପଦ ନାଁରେ ମୁଖରୋଚକ ସମ୍ବାଦ ବକ୍ସ ସମ୍ବାଦ ହୋଇ ବାହାରେ ତାଙ୍କ ପାର୍ଟିର ଯୁବାମଞ୍ଚର ସଂପାଦିକାଙ୍କ ସହ ତାର କୁଆଡ଼େ ଅବୈଧ ସଂପର୍କ ଅଛି । ଅବଶ୍ୟ ଗୁରୁପଦର ସଭାସମିତିର ଫଟୋ ଇତ୍ୟାଦି ଖବର କାଗଜରେ ବାହାରିବା ବେଳେ ସେ ଝିଅଟା ପ୍ରାୟତଃ ସବୁ ସମୟରେ ତା ପାଖରେ ଥିବାର ମୁଁ ଦେଖିଥିଲି । କିନ୍ତୁ ବନ୍ଧୁ ମହଲରେ ଆଲୋଚନା ସମୟରେ ମୁଁ କହେ ଏଗୁଡ଼ା ସବୁ ଗୁଜବ । ରାଜନୀତି କଲେ ଗୁଜବ ରହିବ । ନେହେରୁଙ୍କ ନାଁ ରେ ତ ଗୁଜବ ଥିଲା । ଆଉ ଇଏତ ଗୁରୁପଦ । ଯୌନ ବ୍ୟଭିଚାର ର ଗୁଜବ ଅଛେ ବହୁତ ସବୁ ବଡ଼ ବଡ଼ ନେତାଙ୍କ ନାଁରେ ଅଛି, ରହିବ ମଧ୍ୟ ।

ମୋର ଯେତେବେଳେ କଟକରୁ ଫୁଲବାଣୀ ବଦଳି ହେଲା ମୋତେ ଲାଗିଲା ମୁଣ୍ଡରେ ଯେମିତି ଚଡ଼କ ପଡ଼ିଲା । ପିଲାମାନେ ଏଠି ଇଂରାଜୀ ମିଡ଼ିୟମ ସ୍କୁଲରେ ପଢୁଛନ୍ତି । ଜମି ଖଣ୍ଡେ କିଣିଥିଲି ଯେ ତାକୁ ପୋତି ଫାଉଣ୍ଡେସନ୍ ପକାଇଲା ବେଳକୁ ଏ ବଦଳି-ଯଦି ଚାଲିଯାଏ କଟକରେ ଘର ଖଣ୍ଡେ କରିବା ସ୍ୱପ୍ନ ହୋଇରହିଯିବ । ଏଠି ସିନା ଟିଉସନରୁ ଭଲ ଦୁଇ ପଇସା ମିଳୁଛି । ବିଭିନ୍ନ କୋଚିଂ ସେଣ୍ଟରରେ ମାସରେ ଚାରି ଛଅଟା କ୍ଲାସ ନେଇଗଲେ ଘର ଖର୍ଚ୍ଚ ଉଠିଯାଉଛି- ସେଠି ମାଳ ରାଜ୍ୟରେ ଦରମା ଗଣ୍ଡାକରେ କଣ କରିହେବ ?

ମୋର ସହକର୍ମୀ ମାନେ ମୋର ବଦଳି ଆଦେଶ ଶୁଣି କହିଲେ-ଆପଣଙ୍କର ଏଥିପାଇଁ ଚିନ୍ତା କାହିଁକି ? ଶିକ୍ଷାମନ୍ତ୍ରୀ ତ ଆପଣଙ୍କ ସାଙ୍ଗ । ତାଙ୍କୁ କହିଦେଲେତ ସାଙ୍ଗେ ସାଙ୍ଗେ ବଦଳି ବାତିଲ ହୋଇଯିବ । ରୁଟିନ୍ ବଦଳିରେ ଏମିତି ଲିଷ୍ଟ ବାହାରେ । ଧରା ଧରି ଦେବା ନେବା ପରେ ଏସବୁ ସ୍ଥଗିତ ହୁଏ । ଏଇଟା କେଉଁ ଆପଣଙ୍କ ପାଇଁ ବଡ଼ କଥାଟିଏ ହେବଯେ ?

ଯଦି ଓ ମୁଁ ଜାଣୁଥିଲି ସହକର୍ମୀମାନଙ୍କ କଥାରେ ବ୍ୟଙ୍ଗ ମନୋଭାବ ଉହ୍ୟଥିଲା ତଥାପି ମୁଁ ଉତ୍ତର ଦେଇ ନ ଥିଲି ।

ମୋର ଚିନ୍ତା ଦେଖି ମୋ ସ୍ତ୍ରୀ କହିଲେ - ଶିକ୍ଷାମନ୍ତ୍ରୀ ତ ତୁମର ସାଙ୍ଗ ଦୁଇଜଣ ସାଙ୍ଗ ହେଇ ହଷ୍ଟେଲରେ ରହିଛ । ମୁଁ ଭାବୁଛି ତମେ ଥରେ ଭେଟି କହିଲେ ବଦଳି ବନ୍ଦ ହୋଇପାରେ ।

ମୁଁ ସେ କଥା ଭାବୁଛି ଯେ ହେଲେ ତା ସହ ଆଉ ଗୋଟେ କଥା ମଧ୍ୟ ଭାବୁଛି ଯଦି ଗୁରୁପଦ ମୋ କଥା ନ ରଖିଲା ବେଶି ହାସ୍ୟାସ୍ପଦ ହେବାକୁ ପଡ଼ିବ । ତେଣୁ କହିବି କି ନ କହିବି ଚିନ୍ତା କରୁଛି ।

ତୁମେ ଯେତିକି ଦୂର ଦୃଷ୍ଟି ରଖିବା କଥା ତା ଠାରୁ ଅଧିକ ଦୂର ଦୃଷ୍ଟି ରଖୁଛ । ତାପରେ ତମର ସବୁ କଥାରେ ନେଗେଟିଭ ଥିଙ୍କିଙ୍ଗ, ଆଗେ ନ ହେବା କଥାଟା ଚିନ୍ତା କରି ପକାଅ । ତମର ଏମିତି କେଉଁ ସମ୍ବେଦନଶୀଳ ପ୍ରଶାସନିକ ପଦବୀଟାଏ ଯେ ଯଦି ବଦଳି ବାତିଲ ହୋଇଯାଏ ହୋ ହାଲ୍ଲା ହୋଇଯିବ ବୋଲି ମନ୍ତ୍ରୀ ଚିନ୍ତା କରିବେ । ମାଡ଼ି ମାଡ଼ି ଅଧ୍ୟାପକ ଚାକିରୀ ଖଣ୍ଡେ - ବଦଳି ହେଲେ କି ବାତିଲ ହେଲେ କୁଆ କୋଇଲି ବି ଟେର ପାଇବେ ନାହିଁ । ତମେ ଥରେ ଭେଟ - ଯଦି ହେଲାତ ଭଲ କଥା ନହେଲା ନାହିଁ । ମନ୍ତ୍ରୀ ମାନଙ୍କ କଥା କିଏ ନ ଜାଣେ କି, କ୍ଷମତାରେ ଥିଲାବେଳେ ନିଜ ଗାଁର ନାଁକୁ ତ ଭୁଲିଯାଆନ୍ତି ଆଉ ତମ କଥା ପଚାରେ କିଏ । କେବେ ଏମ୍.ଏ. ପଢିବା ବେଳେ ସାଙ୍ଗ ଥିଲେ ମନେ ରଖିଥିଲେ ରଖିଥିବେ ନହେଲା ନାହିଁ, ଏଥିରେ କେଉଁ ବେଦଟା ଅଶୁଦ୍ଧ ହୋଇଯିବ ଯେ ।

ଭାବିଲି ସତ କଥା - ଥରେ ଟ୍ରାଏଲ ନିଆଯାଉ । ହେଲେ ହେଲା ନ ହେଲେ ନାହିଁ । ତଥାପି ହୋଇଯିବାର ଭରସା ନେଇ ଗଲି ଭୂବନେଶ୍ୱର । ଦୁଇଦିନ ଯାଇ ଫେରିଲି ମନ୍ତ୍ରୀ ଗସ୍ତରେ ଥିଲେ । ତୃତୀୟ ଦିନ ମନ୍ତ୍ରୀ ଥିଲେ ଭାବିଲି ସାକ୍ଷାତ ହୋଇଯିବ । ଚିଟ୍ ଖଣ୍ଡେ ପଠାଇଦେଇ ଅପେକ୍ଷା କଲି । ମାତ୍ର ଲମ୍ବିଥିବା ସାକ୍ଷାତ କାରୀଙ୍କର ଭିଡ଼ ଭିତରେ ମୋ ପାଳି ପଡୁନଥାଏ ଅପେକ୍ଷାରେ ଧୈର୍ଯ୍ୟଚ୍ୟୁତି ଘଟୁଥାଏ ।ତଥାପି ଭାବୁଥାଏ ଆସିଛି ଯେତେବେଳେ ସାକ୍ଷାତ କରିଦେଇ ଯିବାଟା ଠିକ୍ ହେବ । ବେଳେ ବେଳେ ଯାଇ ପି.ଏ.ଙ୍କୁ ପଚାରୁଥାଏ କଣ ଚିଟ୍ ପାଇଁ ଡ଼କରା ଆସିଲା । ସେ ନାସ୍ତି ସୂଚକ ମୁଣ୍ଡ ହଲାଇ ଫୋନ୍ ଧରିବାରେ ବ୍ୟସ୍ତ ରହୁଥାନ୍ତି । ଅପେକ୍ଷା କରି କରି ସମ୍ଭାଳି ନପାରି ଗୋଟିଏ ଚିଠି ଲେଖି ପି.ଏ. ଙ୍କୁ କହିଲି ମନ୍ତ୍ରୀ ମୋର ପୂର୍ବତନ ସାଙ୍ଗ, ଆପଣ ଦୟାକରି ଚିଠିଟି ଦେବାର ବ୍ୟବସ୍ଥା କରିଦେଲେ ସେ ମୋତେ ଡ଼ାକିବେ ନିଶ୍ଚୟ ।

ଚିଠିଟି ଦେଇସାରି ଫେରିବା ପରେ ପି.ଏ. କହିଲେ ମନ୍ତ୍ରୀ ଏଇନେ ମିଟିଂ ଯିବା ପାଇଁ ବ୍ୟସ୍ତ ଅଛନ୍ତି । ଯଦି କିଛି କହିବାର୍ ଅଛି ମୋତେ କୁହନ୍ତୁ ମୁଁ ଯଥା ସମୟରେ ମନ୍ତ୍ରୀଙ୍କୁ ଜଣାଇ ଦେବି ।

ଗୋଟେ ବ୍ୟକ୍ତିଗତ କାମଥିଲା ପରେ କେବେସୁବିଧା ଦେଖି ମନ୍ତ୍ରୀଙ୍କୁ ଭେଟିବି କହି ମୁଁ ଉଠୁଛି ଆସିବା ପାଇଁ ମନ୍ତ୍ରୀ ତରବରରେ ଘରୁ ବାହାରି ଆସି କାରରେ ବସିଲେ । ମୁଁ ଗୁରୁପଦର କାର୍ ପାଖକୁ ଯିବାଭିତରେ ଡ୍ରାଇଭର ଗାଡ଼ି ଷ୍ଟାର୍ଟ କରି ଦେଇଥିଲା । ମୋତେ ଦେଖି ଗୁରୁପଦ ଦୋ ଦୋ ଚିହ୍ନା ହୋଇ ଡ୍ରାଇଭରକୁ ହାତରେ ଇଂଗିତ ଦେଲା ଗାଡ଼ି ରୋକିବା ପାଇଁ ।

ମୁଁ ଗାଡ଼ି ପାଖରେ ପହଞ୍ଚି ନମସ୍କାର ହେବି କି ନହେବି ଚିନ୍ତା କରୁ କରୁ ନମସ୍କାରଟିଏ ହୋଇ ପଡ଼ିଲି ।

ଆପଣ..ତୁମେ..ତୁ ପ୍ରଭଞ୍ଜନ ନା । ଆବେ ନମସ୍କାର କ'ଣ ହେଉଛୁ ? କୁଆଡ଼େ ଆସିଥିଲୁ ?

ମୁଁ ମନେ ମନେ ଖୁସି ହୋଇଗଲି ଯାହାହେଉ ଗୁରୁପଦ ମୋତେ ଭୁଲିନି, ଚିହ୍ନି ପାରିଲା ।

କ'ଣ କାମଥିଲା ?

ଏମିତି ଭେଟିବାକୁ ଆସିଥିଲି, ହଁ କାମଟେ ଥିଲା ଯେ... ।

ତୁ କଟକ ଯିବୁ ତ ?

ହଁ ।

ଆ-ଗାଡ଼ି ଭିତରକୁ । ବାଟରେ କଥା ହେବା, ମୋର ଗୋଟେ ପ୍ରୋଗ୍ରାମ ଅଛି କଟକରେ ।

ବାଟରେ ଅତୀତର ସ୍ମୃତି ରୋମଂଥନ କରୁଥିଲା ଗୁରୁପଦ । 'ଜାଗୃତି' ଖବର କାଗଜର "ଭି.ସି.ବମ୍" ରୁ ଏମ୍.ଏଲ. ଏ. ଓ ମନ୍ତ୍ରୀ ହେବାଯାଏ କହୁ କହୁ କହିଗଲା ଏ ଶିକ୍ଷା ବିଭାଗର ମନ୍ତ୍ରୀ ହେଲେ ବଡ଼ ଅଡୁଆ । ଆରେ ଗ୍ରାମ୍ୟ ଉନ୍ନୟନ କିମ୍ବା ପୂର୍ତ୍ତ ହୋଇଥିଲେ ସିନା ଗୋଟେ କାମ - ଏଇଟା ଶୁଖା ବିଭାଗ କିଛି ନାହିଁ ଏଠି । ବଦଳିଅର୍ଡ଼ର ବାହାରିଲେ ହାତ ତ ଚିକ୍‌ଣ ହେବନି ବରଂ ପାଟି ଘୋଳେଇହେବ ।ଏଠି ଲେକଚର୍‌ର ମାନେ ପଇସାଟିଏ ଦେବା କଥା ତ ତୁଣ୍ଡରେ ଧରିବେନି ସେଥିରେ ଦୁନିଆଁ ଆତୁ ଚିହ୍ନା ପରିଚୟ ଗୋଟାଇ ଆଣି ପ୍ରେସର ଦେବେ । କିଏ କେବେ ମୋତେ ପଢ଼ାଉଥିଲା,

କିଏ କେଉଁଠି ପାଙ୍ଗ ଥିଲା, ନଚେତ୍ କିଏ ଯଦି କେଉଁଠି ସାହିତ୍ୟ ଫାହିତ୍ୟ କରୁଛି ତେବେ ତାଙ୍କୁ ତ ଆହୁରି ସୁବିଧା । ଏଠିତ ସବୁ ଆଇ.ଏ.ଏସ୍. ବାଲା ସାହିତ୍ୟିକ, ତାଙ୍କ ନାଁରେ ଆଲୋଚନା ଲେଖି ଚିହ୍ନା ପରିଚୟ ରଖି ଲବିଆରମ୍ଭ କରି ଦେଉଛନ୍ତି । ଶୁଣିଥିଲି ଗୁରୁମାନେ ଗୋରୁ ଗୋଡ଼ାଉଥିଲେ କ'ଣ ମୁଁ ତ ଏ ବିଭାଗରେ ଗାଈ ଚରାଉଛି ଏବେ ।

ଆରେ ହଁ - ମୁଁ ତ ମୋକଥା କହିବା ଭିତରେ ତୋ'କଥା ପଚାରିବାକୁ ଭୁଲି ଯାଇଛି । ତୁ ଏବେ କେଉଁ ବିଭାଗରେ ?

ତୋ ବିଭାଗରେ - ଅଧ୍ୟାପକ ଅଛି ।

ସରକାରୀ ତ ?

ହଁ ।

ବେଶ ଭଲ - ତୋ ଇଛା ମୁତାବକ ଚାକିରୀରେ ଅଛୁ । କେତେବେଳେ ଯଦି କିଛି କାମ ପଡ଼େ ମୋତେ କହିବୁ ।

ଗୁରୁପଦର କଥା ଶୁଣି ସାରି ମୋର ଆଉ ଇଛା ହେଲାନାହିଁ କହିବାକୁ ମୋ ବଦଳି ବାତିଲ କଥା । ତଥାପି ତା ମନ ରଖିବାକୁ କହିଲି - ହଁ ଦରକାର ପଡ଼ିଲେ ମୁଁ ନିଶ୍ଚୟ କହିବି ।

କଟକରେ ପହଞ୍ଚି ମୁଁ କହିଲି ମୋତେ ଏଇଠି ଓହ୍ଲାଇ ଦେଲେ ଏଇ ଗଳି ଭିତରେ ମୁଁ ରହୁଛି ଚାଲିଯିବି ।

ଗୁରୁପଦ ମୋତେ ଓହ୍ଲାଇ ଦେଲା ବେଳେ କହିଲା - କ'ଣ କାମ ଥିଲା କିଛି କହୁଲୁନି ତ ?

ନା-ଏମିତି ଇଛା ହେଲା ପୁରୁଣା ବନ୍ଧୁ ହିସାବରେ ଭେଟିବାକୁ ତେଣୁ ଚାଲିଯାଇଥିଲି ।

ଭଲ କଲୁ - କେବେ ସମୟ ଦେଖି ଆ । ମନ ଖୋଲି ଗପିବା ।

ହଁ - ନିଶ୍ଚୟ ଯିବି ।

ଗୁରୁପଦ ଚାଲିଗଲା । ମୁଁ ସେଇଠୁ ଘରେ ପହଞ୍ଚିବା ଯାଏ କ'ଣ ଚିନ୍ତା କରୁଥିଲି ଜାଣି ପାରୁ ନଥିଲି । ଘରେ ପହଞ୍ଚିବା ପରେ ସ୍ତ୍ରୀ ପଚାରିଲେ କ'ଣ ଆଜି ମନ୍ତ୍ରୀ ଦେଖା ମିଳିଲେ ?

ହଁ ।

କ୍ୟାନ୍‌ସଲ ହେଲା ?

ମୁଁ ଚାହିଁଲି ନାହିଁ ।

ତମ ମୁଣ୍ଡ ଖରାପ ହୋଇଗଲାଣି କି ?

ନା -ଫୁଲବାଣୀ ଖୁବ୍ ଭଲ ଜାଗା । ଅନ୍ତତଃ ଏଠୁ ମୁକ୍ତିପାଇ ଶାନ୍ତିରେ ଟିକେ ନିଶ୍ୱାସ ମାରିହେବ ।

ସତରେ ଏ ବଦଳି ଯୋଗୁଁ ତମ ମୁଣ୍ଡ ଖରାପ ହୋଇ ଯାଇଛି ବୋଧେ ।

ତମେ ବିଶ୍ୱାସ କର ମୁଁ ଚାହିଁଥିଲେ ପଦେ କଥାରେ ବଦଳି ବନ୍ଦ ହୋଇଥାଆନ୍ତା । ମାତ୍ର ମୋ ସ୍ୱାଭିମାନ ମୋତେ ବାଧା ଦେଲା । ମୁଁ ଭିଡ଼ ଭିତରେ ନିଜକୁ ସାମିଲ କରି ପାରିଲିନି - ଏକା ରହିବାକୁ ଉଚିତ୍ ମଣିଲି । ସାମାନ୍ୟ ବଦଳିଟିଏ ପାଇଁ ମୁଁ ବନ୍ଧୁ ଆଗରେ ଅନ୍ୟମାନଙ୍କ ଭଳି ନିଜକୁ ତୁଚ୍ଛ କରି ପାରିନଥାନ୍ତି । ଏବେ ଆଉ କୃଷ୍ଣ ସୁଦାମାର ଯୁଗ ନାହିଁ ଯେ ଖୁଦଭଜା ମୁଠାଏରେ ବି ବନ୍ଧୁ ଖୁସି ହୋଇଯିବେ । ଏବେ ଯୁଗ ବଦଳି ଯାଇଛି, ବନ୍ଧୁ ଓ ବନ୍ଧୁତ୍ୱ ବି । ଗୁରୁପଦ ମନ୍ତ୍ରୀ ହେବା ପରେ ତାପାଖରେ ବନ୍ଧୁତ୍ୱ ଓ ପରିଚୟର ଯେଉଁ ଲମ୍ୱା ଧାଡ଼ି ଲାଗିଛି ମୁଁ ସେ ଧାଡ଼ିରେ ସାମିଲ ନ ହୋଇ ଧାଡ଼ି ବାହାରେ ଏକା ରହିବାକୁ ଉଚିତ୍ ମଣିଲି । କ'ଣ ଠିକ୍ କଲିନି ?

# ଇଏବି ରାଜନୀତି

ସବୁ ଦିନ ପରି ରାମଧୂନ୍ କାର୍ଯ୍ୟକ୍ରମ ସାରି ଚରଖାରେ ସୂତା କାଟୁଥିଲେ ସାରଙ୍ଗ ବାବୁ - ଦୁଇ ଜଣ ଯୁବକ ମଟର ସାଇକେଲ ଧରି ପହଞ୍ଚିଲେ । ମଟର ସାଇକେଲର ଷ୍ଟାର୍ଟ ବନ୍ଦ ନକରି ଦୁଇଥର ହର୍ଣ୍ଣ ବଜାଇଦେଇ ଡ଼ାକିଲେ-ସାରଙ୍ଗ ବାବୁ ଅଛନ୍ତି-ସାରଙ୍ଗବାବୁ ଅଛନ୍ତି ? ଡ଼ାକ ଶୁଣି ସାରଙ୍ଗ ବାବୁଙ୍କ ସ୍ତ୍ରୀ ବାହାରକୁ ଆସି କହିଲେ-ହଁ ଅଛନ୍ତି । ସେ ସୂତା କାଟୁଛନ୍ତି ଭିତରକୁ ଆସନ୍ତୁ ଆପଣମାନେ ।

ଯୁବକ ଦୁଇଜଣ ଗାଡ଼ିର ଷ୍ଟାର୍ଟ ବନ୍ଦ କରି ବୁଟ୍‌ର ମଚ୍ ମଚ୍ ଶବ୍ଦ କରି ଭିତରକୁ ଆସିଲେ । ଚରଖା ବନ୍ଦ କରି ସାରଙ୍ଗ ବାବୁ ଚାହିଁଲେ ଯୁବକ ଦୁଇ ଜଣକୁ-ଯୁବକ ଦୁଇଜଣ ଫିଙ୍ଗିବା ପରି ନମସ୍କାର କରି କହିଲେ ଆପଣଙ୍କ ପାଖରେ କାମଥିଲା ।

ମୋ ପାଖରେ କାମଥିଲା ? ଆସନ୍ତୁ ଭିତରେ ବସନ୍ତୁ । ତଳେ ପଡ଼ିଥିବା ଶପ ଆଡ଼କୁ ଆଂଗୁଳି ଦେଖାଇ ବସିବାକୁ କହିବାରୁ ଯୁବକ ଦୁଇଜଣ ସମ୍ଭବତଃ ତଳେ ଶପ ଉପରେ ବସିବାକୁ କୁଣ୍ଠା ବୋଧ କଲେ । ତେଣୁ କହିଲେ ବର୍ତ୍ତମାନ ବସିବାକୁ ଆମ ପାଖରେ ସମୟ ନାହିଁ । କେବଳ ଆପଣଙ୍କୁ ଖବରଟି ଦେବାକୁ ଆସିଛୁ ।

କି ଖବର ?

ମନ୍ତ୍ରୀ ଆସିଛନ୍ତି । ସେ ପଠାଇଛନ୍ତି ଆପଣଙ୍କୁ ନେଇକରି ଯିବା ପାଇଁ ।

କିଏ-ଦାମୋଦର ?

ହଁ- ।

ତା'ର ଆଉ ମୋ ପାଖରେ କି କାମ ପଡ଼ିଲା ?

ମନ୍ତ୍ରୀ କେବଳ ଆମକୁ କହିଛନ୍ତି ଆପଣଙ୍କୁ ନେଇକରି ଯିବାପାଇଁ । କାମ ବିଷୟରେ ଆମକୁ କିଛି କହି ନାହାନ୍ତି ।

ସେ କେଉଁଠି ଅଛି ?

ଏଇ ଆମ ଗାଁ ଏମ୍.ଆଇ.ଡ଼ାକ ବଙ୍ଗଳାରେ ।

ଆପଣମାନଙ୍କ ଘର କ'ଣ ଏଇ ଗାଁରେ ? ମୁଁ କେମିତି ଆପଣମାନଙ୍କୁ ଚିହ୍ନି ପାରିଲି ନାହିଁ ?

ଆପଣ ରିଟାୟର୍ଡ଼ ହେବା ବେଳକୁ ଆମେ ପାଠ ପଢ଼ିନଥିଲୁ । ପାଠ ପଢ଼ା ପରେ ସବୁବେଳେତ ବାହାରେ ବାହାରେ ରହୁଛୁ । ତେଣୁ ଚିହ୍ନା ପରିଚୟ ନାହିଁ ।

ଏବେ କ'ଣ କରୁଛନ୍ତି ଆପଣମାନେ ?

ରାଜନୀତି - ଉଭୟେ ଉତ୍ତର ଦେଲେ ।

ରାଜନୀତି କ'ଣ ଗୋଟେ ବୃତ୍ତି - ମୋର ପଚାରିବାର ଉଦ୍ଦେଶ୍ୟ ପାଠ ପଢ଼ା ପରେ କ'ଣ କିଛି ଚାକିରୀ ବାକିରୀ କରୁଛନ୍ତି ?

ଚାକିରୀ-ହୁଃସ୍ । କେଉଁଠି ଥୁଆ ହୋଇଛି ଚାକିରୀ । ତା'ପରେ ଆମର ମଧ୍ୟ ଚାକିରୀ କରିବାର ଇଛାନାହିଁ । ପାଟି ମରୁନଥିବ କି ପେଟ ପୁରୁନଥିବ ଦରମାରେ । ଆମ ଖର୍ଚ୍ଚକୁ କେଉଁ ଚାକିରୀର ଦରମା ଅଣ୍ଟିବ ? ଏଇ କିଛି ଦିନ ମାନେ ଇଲେକ୍ସନ୍ ସମୟଟା ଟିକେ ଖଟଣୀ - ପରେ ବାସ୍ ଆରାମ୍ ହିଁ ଆରାମ୍ ।

ସାରଙ୍ଗବାବୁ ଠିକ୍ ଉପଲବ୍ଧି କରି ପାରିଲେ ସେମାନଙ୍କର ବେଉପଣ ସେ ବିଷୟରେ ଆଉ ଅଧିକ ପଚାରିବା ଠିକ୍ ହେବନାହିଁ ଭାବି କହିଲେ - ଦାମୋଦର ନିଜେ କାହିଁକି ଆସି ପାରିଲା ନାହିଁ ?

ଆପଣତ ଦେଖୁଛନ୍ତି ଇଲେକ୍‌ସନ୍ ସମୟ - ତାଙ୍କୁ ଫୁରୁସତ୍ କାହିଁ ଆସିବାକୁ । ଏବେ ସେ କର୍ମୀ ସମ୍ମିଳନୀରେ ବ୍ୟସ୍ତଅଛନ୍ତି ପରେ ପ୍ରଚାରର ଷ୍ଟ୍ରାଟେଜି ନିର୍ଣ୍ଣୟ ହେବ ।

ହଉ ଠିକ୍ ଅଛି ଆପଣମାନେ ଯାଆନ୍ତୁ ମୁଁ ଯିବି ।

କେତେବେଳେ ?

ସୂତା କଟା ସରିଲାପରେ, ଆଶ୍ରମର ପିଲାମାନଙ୍କ କଥା ବୁଝି ସାରିଲା ପରେ ।

ତା'ହେଲେ ତ ବହୁତ ଡ଼େରୀ ହେବ ?

ହେଇପାରେ ମାତ୍ର ମୋର ଦୈନନ୍ଦିନ କାର୍ଯ୍ୟ ବନ୍ଦକରିତ ଯାଇହେବ ନାହିଁ ।

ଠିକ୍ ଅଛି ଆମେ ମନ୍ତ୍ରୀଙ୍କୁ ଆପଣଙ୍କ କହିବା ମୁତାବକ ଜଣାଇ ଦେବୁ ତା'ପରେ ଯାହା ନିଷ୍ପତ୍ତି ନେବେ ।

ପିଲା ଦୁଇଜଣ ଚାଲିଯିବା ପରେ ସାରଙ୍ଗ ବାବୁଙ୍କ ପତ୍ନୀ ଆସି ପଚାରିଲେ - ଏ ଦୁଇଜଣ କାହିଁକି ଆସିଥିଲେ ?

ମନ୍ତ୍ରୀ ଡ଼କାଇଥିଲେ ।

କେଉଁ ମନ୍ତ୍ରୀ ?

ଦାମୋଦର ।

ଗଲନି ?

ଆଶ୍ରମ କାମ ଯେ ସରିନି ।

ହେଲେ.......।

ହେଲେଆଉ କ'ଣ-ତା'ର କାମଥିଲା ମୋ ପାଖରେ ସେ ଆସି ପାରିଲାନି ଅଥଚ ମୁଁ ମୋର କାମ ଛାଡ଼ି ଚାଲିଯାଇଥାଆନ୍ତି ।

ତାଙ୍କରତ ଏଇନେ ଭୋଟ୍ ସମୟ - ବେଳ ନ ଥିବ ।

ହଁ-ଭୋଟ୍ ସମୟରେ ବେଳ ନାହିଁ, ମନ୍ତ୍ରୀ ହେଲେ ବେଳ ନାହିଁ,ଲୋକଙ୍କ ପାଇଁ ଏମାନଙ୍କ ପାଖରେ ବେଳ ନାହିଁ, ରାଜନୀତି କାହା ପାଇଁ କରୁଛନ୍ତି ?

ଏହି ସମୟରେ ଆଶ୍ରମର ଦୁଆରେ ଗାଡ଼ିଟିଏ ଲାଗିଲା - ଦାମୋଦର ସହାସ୍ୟ ବଦନରେ ଗାଡ଼ିରୁ ଓହ୍ଲାଇ ଆସି ସାରଙ୍କ ବାବୁଙ୍କ ପାଦଧରି ପ୍ରଣାମ କଲେ ।

ମୁଁ ତ ଯାଇଥାଆନ୍ତି ଦାମୋଦର - ତମେ.........।

ମୁଁ ଜାଣେ ସାର୍ - ଆପଣ ବ୍ୟସ୍ତ ଲୋକ, ଆଶ୍ରମର ଦାୟୀତ୍ୱ ନେଇ ଆପଣ ବ୍ୟସ୍ତ । ମୁଁ କର୍ମୀ ସମ୍ମିଳନୀରୁ ମୁକୁଳିବା ପରେ ସିଧା ଉଠି ଆପଣଙ୍କ ପାଖକୁ ଚାଲି ଆସିଲି । ମୋର ତ ଆପଣଙ୍କ ପାଖକୁ ଆସିବା କଥା ନା ।

ଚାଲ ଚାଲ ଭିତରକୁ ଚାଲ ।

ସାର୍ କଥା କ'ଣ କି - ଏବେ ସମୟ ଖୁବ୍ କମ୍ । ମୁଁ ପରେ ସୁବିଧା ଦେଖି ଆପଣଙ୍କ ପାଖକୁ ଆସିବି ।

କାମ କଣ ଥିଲା ?

ହଁ - କାମଟିଏଥିଲା, ମୋ ନିର୍ବାଚନ ପ୍ରଚାର ପାଇଁ ଆପଣ ଗୋଟେ କବିତା ଲେଖିବେ

ଯେଉଁଟା କ୍ୟାସେଟ ହୋଇ ପ୍ରଚାର ହେବ ।

ନିର୍ବାଚନ ପ୍ରଚାରର କବିତା ମୁଁ ଲେଖିବି ?

ଦେଖନ୍ତୁ ସାର୍ ମନା କରନ୍ତୁ ନାହିଁ । କେହି ନ ଜାଣିଲେ ମଧ ମୁଁ ଜାଣେ ଆପଣଙ୍କ ପ୍ରତିଭା ସଂପର୍କରେ । ସ୍ୱାଧିନତା ଆନ୍ଦୋଳନ ସମୟରେ ଆପଣଙ୍କ ଅଗ୍ନୀବର୍ଷି କବିତା ଏ ଅଞ୍ଚଳର ଲୋକମାନଙ୍କୁ ସ୍ୱାଧିନତା ଆନ୍ଦୋଳନରେ ଯୋଗ ଦେବାକୁ ଉଦ୍‌ବୁଦ୍ଧ କରୁଥିଲା । ସବୁରି ମୁହଁରେ ଆପଣଙ୍କ କବିତା ଥିଲା । ଆପଣଙ୍କ ପାଇଁ ଏ ଅଞ୍ଚଳ ସ୍ୱାଧିନତା ସଂଗ୍ରାମରେ ଅଗ୍ରଣୀ ଭୂମିକା ନିଭାଇଥିଲା । ସେଥିପାଇଁ ତ ଲୋକମାନେ ଆପଣଙ୍କୁ ସାରଙ୍ଗ ଗାନ୍ଧୀ ବୋଲି ଡ଼ାକୁଥିଲେ ।

ସେତେବେଳର ସମୟ କ'ଣ ଏବେ ଅଛି ?

ସେ ସମୟ ଏବେ ନାହିଁ ସତ ମାତ୍ର ଏବେବି ନିର୍ବାଚନ ପ୍ରଚାରରେ କବିତାର ପ୍ରଭାବ ରହିଛି । ଦେଖୁ ନାହାନ୍ତି ଆମର ବିରୋଧି ଦଳ ଏକ ବିଖ୍ୟାତ ଗାୟକ କଣ୍ଠରେ ତାଙ୍କର ପ୍ରଚାର କବିତାକୁ କ୍ୟାସେଟ୍ କରାଇ ହଜାର ହଜାର ସଂଖ୍ୟାରେ ଗାଁ ଗଣ୍ଡାକୁ ପଠାଇ ପ୍ରଚାର ଚଳାଇଛନ୍ତି । ଆମ ପ୍ରଧାନମନ୍ତ୍ରୀ ଜଣେ କବଙ୍କୁ ତାଙ୍କ ପ୍ରଚାର କବିତା ଲେଖିବା କାର୍ଯ୍ୟରେ ଲଗାଇଛନ୍ତି ।

ହୋଇଥାଇ ପାରେ - ମାତ୍ର ମୁଁ ତ କେବେ କୌଣସି ବ୍ୟକ୍ତି ବିରୋଧରେ କିମ୍ବା ରାଜନୈତିକ ଦଳପାଇଁ ପ୍ରଶସ୍ତି କବିତା ଲେଖିନାହିଁ । ଏପରିକି ଗାନ୍ଧୀ ଆଦର୍ଶର ପ୍ରଚାର ପାଇଁ କବିତା ଲେଖିଥିଲେ ମଧ ଗାନ୍ଧୀଜୀଙ୍କ ଉପରେ କବିତା ଲେଖିନାହିଁ । ଲୋକେ ଯେତେବେଳେ ବ୍ୟକ୍ତିତ୍ୱ ଓ ଆଦର୍ଶର ପୂଜା ଛାଡ଼ି ବ୍ୟକ୍ତି ପୂଜାରେ ବ୍ୟସ୍ତ ରହିବେ- ଜାଣ ସେତେବେଳେ ଦେଶରେ ଅବକ୍ଷୟର ସମୟ ଆସିଗଲା । ତମ ଦଳର ନେତା ଓ କର୍ମୀମାନେତ ଏଇନେ ଲୋକଙ୍କ ସମସ୍ୟ କଥା ଚିନ୍ତା ନକରି ନିଜ କଥା ବେଶି ଚିନ୍ତା କରୁଛନ୍ତି ଏବଂ କ୍ଷମତାରେ ବି ରହିବା ପାଇଁ ତମ ନେତାଙ୍କର ପିଲାକବିଲା, ଏପରିକି ତାଙ୍କର ବିଲେଇ କୁକୁର ପ୍ରତି ଅନୁରକ୍ତି ପ୍ରଦର୍ଶନ କରୁଅଛନ୍ତି । ସେଥିପାଇଁତ ଗାନ୍ଧୀଜୀଙ୍କର ଆଦର୍ଶ ନୀତିରେ ବିଶ୍ୱାସ କରୁଥିବା ଲୋକମାନେ ବେଳହୁଁ ସାବଧାନ ହୋଇ ରାଜନୀତି ଛାଡ଼ି ଦେଲେ ।

ଦେଖନ୍ତୁ ସାର୍ - ମୋ ପାଖରେ ସମୟ ଏଇନେ ବହୁତ କମ୍ ଦେଶର ରାଜନୀତି କିମ୍ବା ନେତୃତ୍ୱର ଆଦର୍ଶ ବିଷୟରେ ଆଲୋଚନା କରିବାକୁ । ମୁଁ ଚାହେଁ ଆପଣ ମୋର ପ୍ରଚାର ପାଇଁ କବିତା ଲେଖିବେ-ବାଶ୍ । ଆପଣଙ୍କ କବିତାଠୁ ଆପଣଙ୍କ ନାଁର ପ୍ରଭାବ ଲୋକମାନଙ୍କ ଉପରେ ବେଶୀ ସାରଙ୍ଗଗାନ୍ଧୀ

ମୋର ପ୍ରଚାର କବିତା ଲେଖିଛନ୍ତି ମାନେ ତାଙ୍କର ଆଶୀର୍ବାଦ ମୋ ଉପରେ ଅଛି, ଏ ବିଶ୍ୱାସ ଲୋକମାନଙ୍କର ହେବ ।

ତେବେ ତମେ ମୋର ନାଁ ନେଇ ରାଜନୀତି କରିବ ନୁହେଁ । ତମର ଯଦି ସେମିତି ଉଦ୍ଦେଶ୍ୟଥାଏ ତେବେ ତମକୁ ନିରାଶ ହେବାକୁ ପଡ଼ିବ ।

ଉଭୟଙ୍କ କଥୋପକଥନ ଭିତରେ ମନ୍ତ୍ରୀଙ୍କ ଘରୁ ଗାଡ଼ିରେ ଆସିଥିବା ଯୁବକଦ୍ୱୟ ପାଖକୁ ଚାଲିଆସିଥିଲେ । ସେମାନେ ମନ୍ତ୍ରୀଙ୍କୁ ଚାହିଁ କହିଲେ - ସାର୍ ! ଆପଣ କେବଳ ଆଦେଶ ଦିଅନ୍ତୁ ଯାଙ୍କ ଠାରୁ କବିତା ଲେଖାଇ ନେବା ଦାୟିତ୍ୱ ଆମର ।

ଦାମୋଦର ସେମାନଙ୍କୁ ହାତର ଇସାରା ଦେଲେ ଚୁପ୍ ରହିବାକୁ ।

ଦେଖନ୍ତୁ ସାର୍ ମୁଁ ଆପଣଙ୍କର ଛାତ୍ର- ପାଠ ପଢାଇବା ବେଳେ ମୋତେ ଆପଣ ନିରାଶ ଶବ୍ଦଟି ଶିଖାଇ ନାହାନ୍ତି । ଆଶାବାଦୀ ହୋଇ କାର୍ଯ୍ୟ ହାସଲର କୌଶଳଟି ଶିଖାଇଛନ୍ତି ।

ତାହେଲେ ତମେ ପ୍ରକାରାନ୍ତରେ ମତେ ଧମକ ଦେଉଛ ।

ହଁ- ହଁ- ଆପଣ ସେଇଆ ବୋଲି ଧରିନେଇ ପାରନ୍ତି ଠିଆ ହୋଇଥିବା ଯୁବକ ଦୁଇଜଣ କହିଲେ ।

ଉହୁଁଃ-ତମେ ମାନେ ରୁହ । ସାର୍ ପ୍ରତି ଦାନରେ ମୁଁ ଆପଣଙ୍କୁ ନିଶ୍ଚୟ କିଛିଦେବି ।

କ'ଣ ? ଗୁରୁଦକ୍ଷିଣା ? - ମୋର ସେସବୁ କିଛି ଦରକାର ନାହିଁ ।

ଦକ୍ଷିଣାଟା ଅର୍ଥ ଆକାରରେ ନହୋଇ ସମ୍ମାନ ଆକାରରେ ହେଲେ- ?

ମାନେ !

ଦେଖନ୍ତୁ-ଆପଣ ଏତେ ବର୍ଷ ହେଲା ଗାନ୍ଧି ଆଦର୍ଶ ସହ ସାହିତ୍ୟ ସାଧନା କରୁଛନ୍ତି । ଆପଣଙ୍କୁ ଏଯାଏଁ କିଛି ରେକଗ୍‌ନିସନ୍ ମାନେ ପୁରସ୍କାର ମିଳିଲା ?

ମୁଁ ସେସବୁରେ ବିଶ୍ୱାସ କରେନା ।

ଆପଣ ମାନନ୍ତୁ ବା ନମାନନ୍ତୁ - ଏଥି ପାଇଁ ବହୁତ ସ୍ରଷ୍ଟା ମନ୍ତ୍ରୀ ଏବଂ ପଦସ୍ଥ ବ୍ୟକ୍ତିଙ୍କର ଦ୍ୱାରସ୍ଥ ହୁଅନ୍ତି । ଦେଶର ଶାସନର ରାଜନୀତି ଠାରୁ ସେଥିରେ ବେଶି ରାଜନୀତି । କାଲି ସକାଳେ ଅର୍ବାଚୀନ ଥିବା ବ୍ୟକ୍ତିଟି ହଠାତ୍ ପୁରସ୍କାର ପାଇ ବିଶିଷ୍ଟ ବ୍ୟକ୍ତିରେ ପରିଣତ ହୋଇଯାଉଛି । ତେଣୁ ମୋ କହିବା କଥା ଯୁଗ ବଦଳି ଯାଉଛି - ଆପଣ ବି ଯୁଗ ସହ ପାଦ ମିଳାଇ ବଦଳିବା ଉଚିତ୍ । ଦେଖନ୍ତୁ ସାର୍ ମୁଁ ପ୍ରଥମରୁ କହିଥିଲି ମୋ ପାଖରେ ସମୟ ଖୁବ୍ କମ୍ । ଏଠାରୁ ଗଲେ ନିର୍ବାଚନ ରଣ କୌଶଳ ନିର୍ଣ୍ଣୟ କରିବାକୁ ପଡ଼ିବ । ଏଥର ଲଢେଇଟା ଘମାଘୋଟ ହେବ । ସେଥିପାଇଁ ମୂଳରୁ ସତର୍କ ରହିବାକୁ ପଡୁଛି । ମୋର ସମୟ ଆଉ ନଷ୍ଟ କରନ୍ତୁ ନାହିଁ ସାର୍ । ମୁଁ ଆଶା କରୁଛି ଆପଣ ଆସନ୍ତା କାଲି ସୁଦ୍ଧା ନିର୍ବାଚନ ପ୍ରଚାର କବିତା ଲେଖିଦେବେ । ଏଇ ଦୁଇଜଣ ଆସିବେ ନେଇଯିବା ପାଇଁ ।

ସାରଙ୍ଗବାବୁଙ୍କର ଆଉ କୌଣସି ଉତ୍ତରକୁ ଅପେକ୍ଷା ନକରି ସେ ଚାଲିଗଲେ । ପଛେ ପଛେ ତାଙ୍କର ଅନୁଗାମୀ ଦୁଇଜଣଯାକ ଯାଉ ଯାଉ କହିଲେ ମନେ ରହିଲା ତ କାଲିକୁ ରେଡ଼ିକରି ରଖିଥିବେ ଆମେ ଠିକ ଏହି ସମୟକୁ ଆସି ନେଇଯିବୁ ।

ସେମାନେ ଚାଲିଯିବାର ଅନେକ ସମୟଯାଏ ସ୍ଥାଣୁ ହୋଇ ଠିଆ ହୋଇ ରହିଥିଲେ ସାରଙ୍ଗ ବାବୁ । ସେ ଭାବୁଥିଲେ ଏତେ ଶିଘ୍ର କେମିତି ବଦଳି ଯାଉଛି ଆମର ସମାଜ ଓ ସାମାଜିକ ଜୀବନ । ଯିଏ ଗତକାଲି ଛାତ୍ରଥିଲା, ଯାହାକୁ ନିଜ ହାତରେ ସେ ଗଢିଥିଲେ ସେ ଆଜି ପ୍ରକାରାନ୍ତରେ ଧମକ ଦେଇ ଯାଉଛି ଶେଷରେ ତାଙ୍କୁ ସ୍ତାବକ କବିଟିଏ ହେବାର ଧମକ । ଲେଖିଦେଲେ ସେ ଜିତୁ ବା ନ ଜିତୁ ସେଇଟା ପଛକଥା ମାତ୍ର ଲୋକ କ'ଣ କହିବେ । ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣୀତ ବୋଲି କହିଆସୁଥିବା ଲୋକଟି ଶେଷରେ ଦଳୀୟ ରାଜନୀତିରେ ଭାଗନେଲା । ଲୋକ ଖାଲିକହିଥିଲେ ବି ଚଳିଥାଆନ୍ତା ମାତ୍ର ଏତେ ଦିନଯାଏ ତାଙ୍କ ପାଇଁ ଲୋକମାନଙ୍କର ଯେଉଁ ସମ୍ମାନ ବୋଧ ଓ ତାଙ୍କ ଉପରେ ଯେଉଁ ବିଶ୍ୱାସ ରହିଥିଲା ତାହା ରହିବତ ? ନ ଲେଖିଲେ ରାଜନୀତିରେ ରକ୍ତମୁଖା ହୋଇଥିବା ଦାମୋଦର କ'ଣ ଯେ କ୍ଷତି କରିବ ତା'ର ହିସାବ କରି ହେବନି । ପଞ୍ଚାୟତ ସମିତିର ଅଧକ୍ଷ ପଦ ପାଇଁ ନିର୍ବାଚନ ବେଳେ ଗୋଟିଏ ସମିତି ସଦସ୍ୟ ତାକୁ ସମର୍ଥନ କରିନଥିଲା ବୋଲି - କଲେଜରୁ ତା'ଝିଅକୁ

ହରଣଚାଲ କରିନିଆଗଲା, ପରଦିନ ତାହାର ଶବ ମିଳିଥିଲା । ପାଶବିକ ଅତ୍ୟାଚାର ପରେ ମରଣର ଶିକାର ହେଇ, ତାଙ୍କର କଣ୍ଟ୍ରୋଲ ଦୋକାନରେ ନିଆଁ ଲଗାଇଦେବା ସହ ତାଙ୍କୁ ମାଡ଼ମାରି ସାରା ଜୀବନ ପଙ୍ଗୁ କରି ଦିଆଗଲା । ଏମାନେ ଏମିତି ନଂଘା ପାଲଟି ଯାଇଛନ୍ତି ଯେ ଏମାନଙ୍କ ସହ ପଙ୍ଗା ନେବା ମାନେ ଚିତ୍ରଗୁପ୍ତ ପାଞ୍ଜିରୁ ନିଜ ନାଁ ପୋଛି ଦେବା ସଂଗେ ସମାନ । ତାଙ୍କ ନିଜ ପାଇଁ ତାଙ୍କର ଚିନ୍ତା ନାହିଁ ମାତ୍ର ତାଙ୍କ ସ୍ତ୍ରୀ, ପିଲାମାନେ ଓ ଯେଉଁ ଆଶ୍ରମର ଦାୟିତ୍ୱ ରେ ସେ ଅଛନ୍ତି ତା'ର ଯଦି କିଛି କ୍ଷତି ଘଟେ ତେବେ ସେଥିପାଇଁତ ସେ ନୈତିକ ଦାୟୀ ରହିବେ ।

ସ୍ତ୍ରୀଙ୍କ ଡ଼ାକରେ ହଠାତ୍ ଚମକି ପଡ଼ିବାରୁ ତାଂଙ୍କର ଚିନ୍ତାର ଖିଅ ଛିଡ଼ିଗଲା । ସ୍ତ୍ରୀ ପଚାରିଲେ କ'ଣ ହେଲା ଦାମୋଦର ଯିବାପରେ ତମେ ଏଠି ଏମିତି ଖୁଣ୍ଟ ହୋଇ ଠିଆ ହୋଇଛ ଯେ ? କ'ଣ ସେ କହିଲା କି ?

ନା - ।

ତେବେ !

ଦାମୋଦର ତା' ଭୋଟ ପ୍ରଚାର ପାଇଁ କବିତାଟିଏ ଲେଖିଦେବା ପାଇଁ କହୁଛି ।

ଏଇ ଏତିକି କଥାରେ ତମେ ଏମିତି ଚିନ୍ତିତ ?

ତମକୁ ଏତିକି କଥା ଲାଗୁଛି ନା - ତା'ର ପ୍ରଶସ୍ତି ମୁଁ କ'ଣ ଗାଇବି ? ତା'ର କେଉଁଦିଗ- ମହିଳାଙ୍କ ପ୍ରତି ବଳାତ୍କାର, କଳାଧନ ନା ଗୁଣ୍ଡାଗିରି ?

ଏସବୁ କ'ଣ ପ୍ରଚାର ଗୀତିକାରେ ଲେଖାଯାଏ ?

ତାହେଲେ ତମେ କହୁଛ ତାକୁ ପ୍ରଶଂସା କରିବା ପାଇଁ ?

ମୋ ଠୁଁ ତମେ ତାକୁ ବେଶି ଚିହ୍ନିଛ-ସମସ୍ତ ସହ ସାମିଲ କରିନେବା ଉଚିତ୍ । ତମେ ଲେଖି ନ ଦେଲେ ଆଉ କିଏ ଲେଖିଦେବ ? ରାଜ୍ୟରେ କ'ଣ କବିଙ୍କର ଅଭାବ ଅଛି । ମାତ୍ର ତମର କ'ଣ ହେବ

ଚିନ୍ତା କରିଛତ ?

ତମ କଥା ମୋତେ ଗୁହାଳ ପୋଛିବାକୁ ନକହି ପାଛିଆ ବଢ଼ାଇ ଦେବାପରି ଲାଗୁଛି ।

ହଁ- ତମେ ବା କି ଛାର, ତମେ ପରା ନିଜେ କହୁଥିଲ ଜାତୀୟ କବି, କବିଗୁରୁ ବି ଶୋଷକ ଓ ଅତ୍ୟାଚାରୀ ଯେଉଁମାନେ ଆମକୁ ପରାଧିନ କରି ରଖି ଥିଲେ ତାଙ୍କର ବନ୍ଦନା ଲେଖିଥିଲେ ଏବଂ ଭାଗ୍ୟର ବିଡ଼ମ୍ବନାକୁ ଦେଖ ତାହାକୁ ପ୍ରତିମୂହୂର୍ତ୍ତରେ ଆମେ ବୋଲୁଛୁ, ତମେ ସେମିତି କିଛି ଲେଖିଦିଅଯିଏ ବୁଝିବା ଲୋକ ଠିକ୍ ବୁଝିବ ଏବଂ ଯିଏ ନ ବୁଝିବା ଲୋକ ତା'କୁ ଲାଗିବ ତା ବିଷୟରେ ଭଲ ଲେଖିଛ ବୋଲି । ତା' ଉଦ୍ଦେଶ୍ୟ କବିତା ଉପରେ ଯେତେ ନୁହଁ ତମେ ତାକୁ ସମର୍ଥନ କରି କବିତା ଲେଖିଛ ସେଇଟା ବେଶୀ । ତେଣୁ ତମେ ଉଭୟ ଦିଗ ପ୍ରତି ସତର୍କ ରହି ଲେଖ ଏବଂ ଦେଖ ଲୋକ ତମକୁ ଠିକ୍ ବୁଝି ପାରିବେ ।

ସାରଙ୍ଗବାବୁ ଚାହିଁଲେ ନିଜ ସ୍ତ୍ରୀଙ୍କ ଆଡ଼େ - ଆରେ ମୁଁ ତ ଯାହାକୁ ଏ ବିରାଟ ସମସ୍ୟା ଭାବି ଚିନ୍ତିତଥିଲି ତମେ ତାକୁ ଖୁବ୍ ସହଜରେ ହାଲୁକା କରିଦେଲ ।

ନିର୍ବାଚନ ପ୍ରଚାର ଚାଲିଲା ଘମାଘୋଟ-ଘନ ଘନ ମାଇକ ଗର୍ଜୁଥାଏ । ଆପଣ ମାନଙ୍କ ପ୍ରିୟନେତାଙ୍କ କାର୍ଯ୍ୟ ଓ ଦକ୍ଷତାରେ ମୁଗ୍ଧ ହୋଇ ଏଇ ଅଞ୍ଚଳରେ ସର୍ବମାନ୍ୟ ନେତା, ଏଅଞ୍ଚଳର ଗାନ୍ଧି ସାରଙ୍ଗ ଗାନ୍ଧି କେବଳ ତାଙ୍କ ଆଶୀର୍ବାଦ କିମ୍ବା ସମର୍ଥନ ଜଣାଇ ନାହାନ୍ତି, ବୟସାଧିକ୍ୟ ଯୋଗୁଁ ତାଙ୍କ ପାଇଁ ପ୍ରଚାରରେ ଆସିପାରୁ ନଥିବାରୁ ଏଇ ଗୀତ ମାଧମରେ ଆପଣ ମାନଙ୍କ ସମସ୍ତଙ୍କୁ ନିବେଦନ କରିଛନ୍ତି- ତା'ପରେ ଗର୍ଜିଉଠିବ ମାଇକ ।

ନିର୍ବାଚନ ସରିଲା, ବିପୁଳ ଭୋଟ୍‌ରେ ଜିତିଲା ଦାମୋଦର, ଆଶୀର୍ବାଦ ନେବାପାଇଁ ପହଞ୍ଚିଲା ସାରଙ୍ଗ ବାବୁଙ୍କ ପାଖରେ । ସାରଙ୍ଗବାବୁ ବିସ୍ମିତ ହେଉଥିଲେ ସତରେ କ'ଣ ଦାମୋଦର ସେ ଗୀତ ପାଇଁ ଜିତିଛି ନା ସେ ଗୀତର ଅର୍ଥ ନ ବୁଝି ପାରି ତାଂକ ଠାରୁ ଆଶୀର୍ବାଦ ନେବାକୁ ଆସିଛି ?

ଦାମୋଦର ବାବୁ ଆଶୀର୍ବାଦ ନେଇ ଫେରିବାବେଳେ ସାରଙ୍ଗ ବାବୁଙ୍କୁ କହିଲେ- ଗୁରୁ କେବେ ଇଛାକରି ମଧ ଶିଷ୍ୟର କ୍ଷତି କରିପାରେନା । ଆପଣ ଯାହା ଲେଖିଥିଲେ ଭାବୁଛନ୍ତି ମୁଁ ତା'ର ଅର୍ଥ ଜାଣିନଥିଲି ବୋଲି ? ଜାଣିଥିଲି - ତଥାପି ମୁଁ ଗୋଟେ ଚ୍ୟାଲେଞ୍ଜ ନେଲି । ଚ୍ୟାଲେଞ୍ଜଟି କ'ଣ

ଜାଣନ୍ତି ?

କ'ଣ ?                    .. . . .

ଆବ୍ରାହାମ୍ ଲିଂକନ କ'ଣ ମିଛରେ କହିଥିଲେ 'ବ୍ୟଷ୍ଟିର ମସ୍ତିଷ୍କ ନାହିଁ ବ୍ୟକ୍ତିର ଅଛି' । ଏସବୁ ପ୍ରଚାର ବ୍ୟଷ୍ଟି ପାଇଁ ଉଦ୍ଦିଷ୍ଟ ଥିଲା । ଯେହେତୁ ସେମାନଙ୍କର ମସ୍ତିଷ୍କ ନାହିଁ ସେମାନଙ୍କୁ ଯୁଆଡ଼େ ଅଡ଼ାଇଲେ ସେଆଡେ ଗଲେ । ଅସଲ ପ୍ରଚାରଥିଲା ଅର୍ଥରେ- ସେଥିରୁ ମୁଁ କାର୍ପଣ୍ୟ ହୋଇନଥିଲି । ଆପଣ ଗୀତ କ'ଣ ଲେଖିଥିଲେ କେହି ଶୁଣିନାହାନ୍ତି । ଶୁଣିଥିଲେ ବି ଅର୍ଥ କରିବାର ଅବକାଶ ପାଇ ନାହାନ୍ତି କାରଣ ସେ ଗୀତଟିର ବ୍ୟାକ୍ ଗ୍ରାଉଣ୍ଡ ମ୍ୟୁଜିକ୍‌ରେ 'ଭୋଟ ଦିଅ-ଭୋଟ ଦିଅ' ହିଁ ଡ଼ୋମିନେଟିଂ ଥିଲା । ମୋର ଉଦ୍ଦେଶ୍ୟ ଥିଲା ଆପଣ ମୋ ସପକ୍ଷ ଓ ବିପକ୍ଷ ଯେଉଁଥିରେ ବି ଲେଖନ୍ତୁ ଲୋକଙ୍କର ଧାରଣା ନିଶ୍ଚୟ ହେବ ଆପଣ ମୋର ସମର୍ଥକ ନଚେତ୍ ମୁଁ ଆପଣଙ୍କ ଗୀତକୁ କ୍ୟାସେଟ୍ କରି ପ୍ରଚାରରେ କାହିଁକି ଲଗାଉଛି । ସେତିକି ହିଁ ମୋର ଦରକାର ଥିଲା- ଆପଣ ଇଚ୍ଛା ବା ଅନିଚ୍ଛା ସତ୍ତ୍ୱେ ସେତକ ମୋତେ ଦେଇଛନ୍ତି । ମୁଁ ଯୁଗଧର୍ମରେ ପରିଚାଳିତ ହୋଇ ରାଜନୀତି କରୁଥାଇପାରେ ମାତ୍ର ଆପଣତ ମାଟିର ଦ୍ରୋଣ ଗୁରୁ ନୁହଁନ୍ତି ଯେ ମାଗିପାରିଥାନ୍ତେ ମୋର ପରାଜୟ । ତେଣୁ ଶିଷ୍ୟ ପାଇଁ ଆପଣ ପ୍ରଚ୍ଛନ୍ନରେ ଆଶୀର୍ବାଦ ଦେଇଛନ୍ତି ।

ସାରଙ୍ଗବାବୁ ବିସ୍ମୟରେ ଚାହିଁଥିଲେ ଦାମୋଦର ଆଡ଼େ ଭାବୁଥିଲେ ତାଙ୍କର ଶିକ୍ଷା ବ୍ୟର୍ଥ ଯାଇନି ।

# ହଜିଲା ଘରର ଠିକଣା

ତମେ କ'ଣ ଭାବୁଛ ଯେ ତମ ହାତରେ ଟଙ୍କା ହେବା ଯାଏଁ ଭୁବନେଶ୍ୱରରେ ଜାଗା ତମ ପାଇଁ ଅପେକ୍ଷା କରି ବସିଥିବ ? ଏଇ ଆମ ଦେଖାନ୍ତରେ ପାଞ୍ଚଟା ବର୍ଷ ତ ହେବ- ଦେଖୁନ ବି.ଡ଼ି.ଏ କଲୋନୀ, ଓମ୍‌ଫେଡ଼ ଛକ, ଚନ୍ଦ୍ରଶେଖର ପୁରକୁ । ପାଞ୍ଚ ବର୍ଷ ତଳେ ସନ୍ଧ୍ୟା ହେଲେ ଗାଡ଼ି ମଟର ତ ଦୂର ର କଥା ରିକ୍‌ସାବାଲା ବି ଯାଉ ନଥିଲେ, ଆଉ ଏବେ ରାତି ଦଶଟା ଯାଏଁ ଟାଉନ୍ ବସ୍ । ବରମୁଣ୍ଡାରେ ଜାଗା କିଣିବା କଥା କହିଲି ଯେ କହିଲ ସେଇଟା କ'ଣ ଭୁବନେଶ୍ୱରରେ । ଏବେ ଦେଖିଲ ତ ବସ୍‌ଷ୍ଟାଣ୍ଡ ହେବାରୁ କେମିତି ବଢ଼ିଗଲା ସେ ଅଞ୍ଚଳର ଦାମ୍ । ତମେ କେବେ ମୋ କଥା ଶୁଣିଛନା ମାନିଛ । ସବୁବେଳେ ଏତେ ଟଙ୍କା ଏକକାଳୀନ କାହିଁ କହି କହି ଟାଳିଛ । ଜାଗା କିଣିବାକୁ ସବୁ ଟଙ୍କା ଏକକାଳୀନ କେବେ ବି ତମ ପାଖରେ ହେବନି- ଯେବେ କିଣିଲେ ବି ଲୋନ୍ କରି କିଣିବ । ତେଣୁ ଏବେଠାରୁ କାହିଁକି ନ କିଣିବ ? ଏବେ ତ ଜାଗା ବିକିବା ବାଲାଙ୍କ ସଂଖ୍ୟା ବଢୁନି, କିଣିବା ବାଲାଙ୍କ ସଂଖ୍ୟା ବଢୁଛି । ତେଣୁ ଯେମିତି ହେଲେ ପ୍ରୋଭିଡେଣ୍ଟଫଣ୍ଡ ହେଉ କିମ୍ବା ସୁନା ବନ୍ଧା ପଡୁ ବା ବିକ୍ରି ହେଉ, ଜାଗା ଖଣ୍ଡେ କିଣି ରଖିଥାଅ, ଘର ପଛେ ଯେବେ କରୁଛ କର ।

ତମେ କ'ଣ ଭାବିଛ ରିଟାୟାର୍ଡ଼ ପରେ ଯାଇ ଗାଁରେ ରହିବ ? ମୁଁ ଏଇନେ କହିଲେ ତମେ ସବୁଥର ପରି ମୋତେ ଆଦର୍ଶର କଥା କହିବ । ମୁଁ ମନା କରୁନି ଯେ ଆମେ ଗାଁରେ ବଢ଼ି ନ ଥିଲେ ବୋଲି । ମାତ୍ର ଗାଁରେ ବଢ଼ିବା ଏବଂ ତିରିଶ ପଇଁତିରିଶ ବର୍ଷ ତମ ସହ ଭୁବନେଶ୍ୱରରେ ରହି ରିଟାୟାର୍ଡ଼ ପରେ ଗାଁରେ ଯାଇ ଚଳିବା ଭିନ୍ନ କଥା, ହେଲା ଆମେ ସିନା ଯା' ହେଲେ ବି ଚଳିଯିବା ହେଲେ ତମ ପିଲାମାନେ ଚଳିପାରିବେତ ? ସେମାନେ ତ ଗାଁକୁ ଯିବାକୁ ମଙ୍ଗୁ ନାହାନ୍ତି ଆଉ ବଡ଼ ହେବା ପରେ ଯାଇ ଗାଁରେ ରହିବେ ବିଶ୍ୱାସ କରୁଛ ? ଆଉ ସେମାନେ ଯଦି ଏଠାରେ ରୁହନ୍ତି ଆମେ ବୁଢ଼ାବୁଢ଼ୀ ଦିଇଟା ଯାଇ କ'ଣ ଗାଁରେ ରହିବା ? ତେଣୁ ମୁଁ କହୁଛି ଖଣ୍ଡେ ଜାଗା ଅନ୍ତତଃ କିଣିକି ପକେଇ ଦେଇଥାଅ । ପରେ କେବେ ସୁବିଧା ହେଲେ ଘର କରିବ । ଯଦି ଆମେ ନ କରିପାରନ୍ତି ତେବେ ପିଲାମାନେ କରିବେ । ଆଉ ତମର ସବୁ ସୁବିଧା ହେବ ନା ପିଲାମାନଙ୍କ ଝମେଲା ତୁଟିବ ଯେ ତମେ ଜାଗା କିଣିବ । ଧର ବି ତମର ଝମେଲା ତୁଟିଗଲା କିନ୍ତୁ ସେତେବେଳକୁ ଭୁବନେଶ୍ୱରରେ ଜାଗା ମିଳୁନଥିବ କିମ୍ବା ମିଳୁଥିଲେ ବି ଆମ କ୍ଷମତାରୁ ବାହାର ହୋଇ ଯାଉଥିବ ।

ଟିକିଏ ଫୁରୁସତ ମିଳିଲେ ମୋ ସ୍ତ୍ରୀ ତାଙ୍କର ଏଇ ପୁରୁଣା ଓ ଘସରା ରେର୍କଡ଼ଟି ବଜାନ୍ତି । ବେଳେବେଳେ ମୁଁ ବିରକ୍ତ ହୋଇ କୁହେ- ହଉ ହେଲା ବାବା ତମେ ଏମିତି ବ୍ୟସ୍ତ ହୁଅନି । ଜାଗା-ଜାଗା ବୋଲି ତମେ ତାକୁ ଗାୟତ୍ରୀ ମହାମନ୍ତ୍ର କରିସାରିଲଣି । ମୁଁ ସବୁବେଳେ ଗୋଟିଏ କଥାରେ ବିଶ୍ୱାସ କରେ ଗୋ, କନ୍ୟା, ଭୂମି ଭାଗ୍ୟ ପ୍ରାପ୍ତି । ଭାଗ୍ୟରେ ନଥିଲେ ତମେ ଯେତେ ଟଙ୍କା ଧରି ବସିଥିଲେ ମଧ ଜାଗା କିଣିପାରିବ ନାହିଁ । ତମ ଭାଇ କଥା ଦେଖୁନ ! ରାତାରାତି ଜାଗାକିଣି ପକାଇଲା, ଅବଶ୍ୟ ଟଙ୍କା ତା'ପାଖରେ ଥିଲା ମାତ୍ର ଆଗରୁ କେତେ ମଧ୍ୟଷ୍ଠ, କେତେ କାହାକୁ କହିକହି ଜାଗା ଯୋଗାଡ଼ ହେଉନ ଥିଲା, କିନ୍ତୁ ହଠାତ୍ ଯୋଗ ଫିଟିଲା କିଣି ପକାଇଲା । ଆମର ବି ସେମିତି ଦିନେ ଯୋଗ ଆସିବ ତେଣୁ ଧୈର୍ଯ୍ୟଧରି ଅପେକ୍ଷା କର । ତା' ପରେ ଆମର ଅଳପ ଧନ ବିକଳ ମନ । ଜାଗାଟିଏ କିଣିବା ପୂର୍ବରୁ ସବୁ କଥା ଦଶ ଥର ଲେଖାଏଁ ଆମେ ଭାବୁଛନ୍ତି , ସେହି ଭାବିବା ଓ ନିଷ୍ପତ୍ତି ନେବା ଭିତରେ ହିଁ ଜାଗା ବିକ୍ରି ସରିଯାଇଥାଏ ।

ତା'ପରେ ଆମେ ଯେତେବେଳେ ଜାଗାଟିଏ କିଣିବା ଅବସର ପରେ ରହିବା ପାଇଁ ସେତେବେଳେ ଦେଖି ଚାହିଁତ ଟିକିଏ କିଣିବା-କିଏ ପଡ଼ୋଶୀ ଅଛନ୍ତି ବା ହେବେ, ତାଙ୍କର ଷ୍ଟାଟସ କ'ଣ, ସେମତି ସବୁତ ଦୃଷ୍ଟିରେ ରଖିବାକୁ ପଡ଼ିବ । ପିଲାମାନେ ଯଦି କିଏ କୁଆଡ଼େ ବାହାରେ ଚାକିରୀ ପାଇଲେ ଚାଲିଯିବେ, ଆମେ ଥିବା ବୁଢ଼ାବୁଢ଼ୀ ଦୁଇଜଣ । ତେଣୁ ସମୟ କଟାଇବା ପାଇଁ ଆମକୁ ଟିକିଏ ପଡ଼ୋଶୀ ଦେଖି ଚାହିଁ କିଣିବାକୁ ପଡ଼ିବ ।

ତମେ ତା ହେଲେ ଜାଗା କିଣିପାରିବ ନାହିଁ । କିଏ ଜାଗା ଦେଖି ଚାହିଁ କିଣେ ନା ପଡ଼ୋଶୀ ଦେଖି ଚାହିଁ କିଣେ ?

ହଉ ବାବା ମୁଁ ଆଉ ଜାଗା କଥା ଉଠାଇବି ନାହିଁ । ତମେ କିଣିଲେ କିଣ ନ ହେଲେ ନାହିଁ । ତମେ ରିଟାୟାର୍ଡ଼ ପରେ ବାବା ହୋଇ ମଠ ଖୋଜିଲେ ମୁଁ ବି ପଛେପଛେ ଚାଲିବି ।

ଆରେ ତମେ ଏମିତି ରାଗିଲେ ଚଳିବ । ମୁଁ ବୁଝାବୁଝି କରୁଛି । ଜଣେ ଦିଜଣ ଦଲାଲଙ୍କୁ ବି କହିଛି । ସେମାନେ ବୁଝି କରି ଖବର ଦେବେ ବୋଲି କହିଛନ୍ତି । ମୁଁ ବି କାଲି ଗୋଟେ ଜାଗା ଦେଖି ଯିବାର ଅଛି । ଯଦି ପସନ୍ଦ ହୁଏ ତେବେ ରଖି ନବା ।

ପରଦିନ ଜାଗା ଦେଖିବା ପରେ ମୋର କାହିଁକି ଜାଗାଟା ପସନ୍ଦ ହୋଇଗଲା । ଯଦି ଓ ଜାଗାଟା ମୁଖ୍ୟ ରାସ୍ତାକୁ ଲାଗି ନଥିଲା ତଥାପି ମୁଖ୍ୟ ରାସ୍ତାରୁ ଶହେ ମିଟର ଦୂରତା ଭିତରେ । ଜାଗାଟା ରେଟ୍ ନେଇ ଯଦି ଓ ମୁଁ ଟିକିଏ ଦ୍ୱନ୍ଦରେ ଥିଲି ତଥାପି ଜାଗାଟି ଛାଡ଼ିଦେବାର ସପକ୍ଷରେ ନ ଥିଲି । ସ୍ୱାମୀଙ୍କୁ କହିବା ପରେ ସେ ସଙ୍ଗେସଙ୍ଗେ ରାଜି ହୋଇ କହିଲେ ଯଦି ଟଙ୍କା କିଛି ନିଅଣ୍ଟ ହେବ ତେବେ ମୁଁ ମୋ ଭାଇଙ୍କ ଠାରୁ ଆଣିଦେବି ତାଙ୍କୁ ପରେ ଧିରେ ଧିରେ ଫେରାଇ ଦେବା, ଯା ହେଉ ଜାଗାପାଇଁ ଆନୁସଙ୍ଗିକ ଟଙ୍କାର ଯୋଗାଡ଼ରେ କିଛି ଅସୁବିଧା ହେଲାନି-ଏବଂ ଜାଗାଟା କିଣି ହୋଇଗଲା ।

ଜାଗା କିଣାହେବା ପୂର୍ବରୁ ଜାଗା ପାଇଁ ଥିବା ବ୍ୟଗ୍ରତା ଓ ବ୍ୟସ୍ତତା ଧୀରେ ଧୀରେ ଘର ତିଆରି ଉପରକୁ ଚାଲିଗଲା । ଆମ ସ୍ୱାମୀ ସ୍ତ୍ରୀଙ୍କର ଅନ୍ତରଙ୍ଗ ଅବସର ସମସ୍ତକ କେବଳ ଘର ତିଆରି ଆଲୋଚନାରେ ହିଁ କଟିଲା । ମୁଁ ଅନୁଭବ କରୁଥିଲି ଧୀରେ ଧୀରେ ଆମେ ଏକ ବୃଦ୍ଧ ଦମ୍ପତିରେ ପରିଣତ ହୋଇଯାଉଛୁ । ଆମ ଭିତରେ ଆଉ ନଥିଲା ସମ୍ପର୍କର ଭାବ ପ୍ରବଣତା କେବଳ ଥିଲା ନିରାପଦ ଅବସର ଜୀବନ ପାଇଁ ଘର କରିବାର ଚିନ୍ତା ।

ଘର ତିଆରି କରିବାଟା ଏକ ଅଫିମିଆ ନିଶା । ଏ ନିଶା ଧୀରେ ଧୀରେ ଚଢ଼େ ମାତ୍ର ପୂରାଚଢ଼ିଗଲା ପରେ ବହୁ ସମୟଯାଏ ଝାଂକି ରଖେ । ଠିକ୍ ସେମିତି ମୋ ଭିତରେ ଚଢ଼ିଲା ଘର ତିଆରି କରିବାର ନିଶା । ବିଭିନ୍ନ ସରକାରୀ, ବେସରକାରୀ ମାଧ୍ୟମରୁ ଋଣ ଯୋଗାଡ଼ କରି ମୁଁ ଲାଗି ପଡ଼ିଲି ଘର ତିଆରି କରିବାରେ । ମାତ୍ର ସତକଥା କହିବାକୁ ଗଲେ ମୋ ଘର ତିଆରି କରିବା ନିଶାର ଅଫିମ ଥିଲେ ମୋ ସ୍ତ୍ରୀ । ତାଙ୍କର ପ୍ରେରଣା ହେଉ ବା ପ୍ରରୋଚନା ହେଉ ମୁଁ ସବୁମାଧ୍ୟମରୁ ଋଣ କରି ଘରଟିଏ ତିଆରି କରିବାକୁ ସମର୍ଥ ହୋଇଗଲି ।

ଘର ତିଆରି ସରିବା ବେଳକୁ ମୋ ଦରମାରୁ ଏତେ ପରିମାଣର ଟଙ୍କା କଟୁଥିଲା ଯେ ଶେଷରେ ଆମର ନିତିଦିନିଆ ଖାଦ୍ୟପେୟର ଖର୍ଚ୍ଚକାଟ କରିବାକୁ ପଡ଼ିଲା । ଏସବୁ ସତ୍ତ୍ୱେ ବି ଗୋଟେ ଆନନ୍ଦ ଥିଲା ଯେ ରାଜଧାନୀରେ ଘରଟିଏ ତିଆରି କରି ପାରିଛୁ ଏବଂ ଅବସରକାଳୀନ ଅସ୍ଥିର ପାଇଁ ଆମକୁ ଚିନ୍ତା ନାହିଁ । ଛୋଟଛୋଟ ପାରିବାରିକ ଅଭାବ ଆମକୁ ଆଉ ଅଭାବ ପରି ଲାଗୁ ନଥିଲା । ଆମ ବିବାହର ବହୁତ ବର୍ଷ ପରେ ମୁଁ ଅନୁଭବ କଲି ମୋ ଅସୁବିଧାକୁ ହୃଦୟଙ୍ଗମ କରିବାକୁ ମୋ ସ୍ତ୍ରୀଙ୍କର ଗୋଟେ ସୁନ୍ଦର ଦରଦୀ ହୃଦୟ ଅଛି । କାରଣ ଆଗରୁ କୌଣସି ଛୋଟ ଛୋଟ ଅଭାବକୁ ସେ ଯେତେ ଗୁରୁତ୍ୱ ଦେଉଥିଲେ ଆଉ ସେପରି ପ୍ରାୟ ଦେଖା ଯାଉନଥିଲା ।

ଘର ତିଆରି ସରିବା ପରେ ମୋ ସ୍ତ୍ରୀ ତାଙ୍କ ଭାଇଙ୍କ ହାତରେ ଜ୍ୟୋତିଷ ଡ଼କାଇ ଘର ପ୍ରତିଷ୍ଠା ଓ ଗୃହ ପ୍ରବେଶର ତିଥିବାର ଠିକ୍ କଲେ । ମୁଁ ପ୍ରଥମେ କହୁଥିଲି ଆମେ ତ ଏବେ ରହିବାନି ଭଡ଼ା ଦେବା, ନିଜେ ରହିବା ବେଳେ ସେକଥା କଲେ ଚଳାନ୍ତାନି । ମାତ୍ର ତାଙ୍କର ଜିଦ୍‌ଥିଲା ଯେବେ ରହିଲେବି ଘରଟାକୁ ପ୍ରତିଷ୍ଠା ନ କଲେ କେମିତି ହେବ, ଶେଷରେ ତାଙ୍କ ଜିଦ୍ ରହିଲା । ଘର ପ୍ରତିଷ୍ଠା ପାଇଁ ଏକ ଛୋଟକାଟର ଭୋଜିଭାତର ଆୟୋଜନ କଲେ । ସବୁ ଆୟୋଜନ ପରେ ମୋତେ ପହିଲେ କିଛି ନିମନ୍ତ୍ରଣ ପତ୍ର ଛାପ । ତମର ସାଙ୍ଗ ସାଥୀ, ବନ୍ଧୁବାନ୍ଧବ ଓ ସେଠାବାର ପଡ଼ୋଶୀମାନଙ୍କୁ ଦେବା ପାଇଁ । ନିମନ୍ତ୍ରଣ ପତ୍ର ଧରି ମୁଁ ଓ ମୋ ସ୍ତ୍ରୀ ଗଲୁ ଆମ ନୂଆଘର ପଡ଼ୋଶୀମାନଙ୍କୁ ଦେବା ପାଇଁ । ଯଦି ଓ ମୁଁ ସେଠାରେ ଘର ତିଆରି କରୁଥିଲି ତଥାପି ସେଠିକାର କୌଣସି ପଡ଼ୋଶୀଙ୍କୁ ଚିହ୍ନି ନ ଥିଲି । ଚିହ୍ନିବାର ଅବକାଶ ବି ନଥିଲା । କାରଣ ଘର ତିଆରି ଜାଗାଠାରୁ ମୋ କ୍ୱାଟର ଥିଲା ବହୁତ ଦୂରରେ । ଯେବେ ଯାଇଛି କାମ କେମିତି ଚାଲିଛି ଦେଖିବା ପାଇଁ କିମ୍ବା ରଡ୍, ସିମେଣ୍ଟ, ବାଲି, ଇଟା ଆସି ପହଞ୍ଚିଲା କି ନାହିଁ ତାର ତଦାରଖ୍ କରିବା ପାଇଁ । ଏସବୁ ବ୍ୟସ୍ତତା ଭିତରେ ମୁଁ ଆଉ କୌଣସି ପଡ଼ୋଶୀଙ୍କ ସହ ସମ୍ପର୍କ ରଖିବାକୁ ସମୟ ପାଇ ନଥିଲି ।

ପ୍ରଥମେ ମୋ ଘର ସାମ୍ନାରେ ଥିବା ଘରଠାରୁ ଆରମ୍ଭ କରିବାକୁ ଭାବିଲି । ଆମେ ଉଭୟ ଗେଟ୍ ଖୋଲି ଭିତରକୁ ଗଲୁ । କଲିଂ ବେଲ୍ ଚିପିଲୁ । ବେଲ୍ ଦେବା ଅବସରରେ ମୁଁ ଘର ମାଲିକଙ୍କ ନାଁଟା ପଢିଦେଲି । ପନ୍ଦର ଷୋହଳ ବର୍ଷର ପିଲାଟିଏ, ବୋଧହୁଏ ଚାକର ପିଲା ହେବ ଆସି କବାଟ ଖୋଲିଲା । ମୁଁ ତାକୁ କହିଲି କହ, ରାୟ ବାବୁଙ୍କୁ କିଏ ଡ଼ାକୁଛନ୍ତି ଭେଟିବାକୁ ।

ସାହେବ ନାହାନ୍ତି ।

ତାଙ୍କ ସ୍ତ୍ରୀ ଅଛନ୍ତି ତ ?

ହିଁ ।

କହ ଆମେ ଡ଼ାକୁଛୁ ବୋଲି ।

କିଏ ଡ଼ାକୁଛନ୍ତି ବୋଲି କହିବି ?

କହ ତାଙ୍କ ଘର ଆଗରେ ଯିଏ ଘର ତିଆରି କରିଛନ୍ତି ସେ ଡ଼ାକୁଛନ୍ତି ବୋଲି ।

ପିଲାଟା ଭିତରକୁ ଯାଇ କହିଲା - ମାଆ କିଏ ଆସି ଡ଼ାକୁଛନ୍ତି ।

ବୁଝିଲୁନି କିଏ ସେ ?

ପଚାରିଲି ! ସେ କହିଲେ କହିଦେ, ଆମ ଘର ଆଗରେ ଯିଏ ଘର ତିଆରି କରିଛନ୍ତି ସେ ଡ଼ାକୁଛନ୍ତି ।

ହଉ ମୁଁ ଯାଉଛି - ତୁ ଯାଇ କହ ଡ୍ରଇଙ୍ଗ ରୁମରେ ବସନ୍ତୁ । ବୋଧହୁଏ ଭଦ୍ରମହିଳା ବାଥ୍‌ରୁମ୍ ଭିତରେ ଥିଲେ । ସାୱାରର ଶବ୍ଦ ସହ ତାଙ୍କର କଥାବାର୍ତ୍ତା ସେତିକି ଶୁଣିବା ପରେ ପୁଣି ଥରେ ଟେପ୍‌ରୁ ପାଣି ଝରିବାର ଶବ୍ଦ ହେଲା ।

ବସିବା ଅବସରରେ ମୁଁ ତାଙ୍କ କାଛରେ ଥିବା ଆଲମାରୀ ଗୁଡ଼ିକ ଉପରେ ଆଖି ବୁଲାଇଲି । ଦେଖିଲି ବହୁତ ବହି ଓ ପତ୍ର ପତ୍ରିକା ଖୁବ୍ ଯତ୍ନ ସହକାରେ ସଜ୍ଜିତ ହୋଇଛି । ବହି ଥାକ ଉପରେ ଆଖି ବୁଲାଉ ବୁଲାଉ ମୋର ଚାରୋଟି ଯାକ ସଂକଳନ ସେଠାରେ ଥିବାର ଦେଖି ଖୁସି ହୋଇଗଲି । ମୋ ସ୍ତ୍ରୀଙ୍କ ଆଡ଼େ ଚାହିଁ କହିଲି, ଅବସର ପାଇଁ ଆମକୁ ଖୁବ୍ ସୁନ୍ଦର ପଡ଼ୋଶୀ ମିଳିଲେ ।

ସେ ବିସ୍ମିତ ହୋଇ ମୋ ଆଡ଼େ ଚାହିଁ ପଚାରିଲେ, କେମିତି ?

ଏଇ ଦେଖୁନ ମୋ ରୁଚି ସହ ପୁରା ମେଳଖାଇ ଯାଉଛି ରୁଚି । କେତେ ବହି ପତ୍ର, ପତ୍ର ପତ୍ରିକା ରଖିଛନ୍ତି । ମୋତେ ସବୁଠୁ ଖୁସି ଲାଗୁଛି କ'ଣ ଜାଣ-ମୋର ସବୁତକ ସଂକଳନ ଏଠାରେ ଅଛି ।

ଏହି ସମୟରେ ସ୍କ୍ରିନ୍ ଆଡ଼େଇ ପଶି ଆସିଲେ ଭଦ୍ରମହିଳା, ମୁଁ ତାଙ୍କୁ ଦେଖି ହଠାତ୍ ବିସ୍ମିତ ହୋଇଗଲି । ମୋ ସ୍ତ୍ରୀ ତାଙ୍କୁ ନମସ୍କାର କଲାବେଳେ ମୁଁ ସଚେତନ ହୋଇ ମୋର ହାତ ଉଠାଇ ନମସ୍କାର କଲି । ଆମ ଉଭୟଙ୍କ ପରିଚୟ ନେବାକୁ ଯାଇ ମୋ ସ୍ତ୍ରୀ କହିଲେ - ମୁଁ ମିସେସ୍ ମହାପାତ୍ର

ଏବଂ ଏ ହେଉଛନ୍ତି ପ୍ରିତମ ମହାପାତ୍ର । ଆମେ ଏଇଠି ଗୋଟାଏ ଘର ତିଆରି କରିଛୁ । ଆସନ୍ତାକାଲି ପ୍ରତିଷ୍ଠା ଓ ଗୃହପ୍ରବେଶ । ଟିକିଏ ପୂଜା ଓ ହୋମ ଆଦିର ବ୍ୟବସ୍ଥା କରିଛୁ । ଦୟାକରି ନିଶ୍ଚୟ ଆସିବେ ।

ଭଦ୍ରମହିଳା ଖୁବ୍ ଅଳ୍ପ ସମୟ ପରେ ନିଜକୁ ଏଙ୍କ ସହଜ ଭାବକୁ ନେଇଆସି କହିଲେ - ଖୁବ୍ ଭଲ ହେଲା । ଆମକୁ ବି ଜଣେ ପଡୋଶୀ ମିଳିବେ । ଆପଣମାନେ ଟିକିଏ ବସନ୍ତୁ, ମୁଁ ଟିକିଏ ଚା' ତିଆରି କରି ଆଣେ ।

ନାଇଁ ଆଜ୍ଞା ଥାଉ । ଏବେ ସମସ୍ତଙ୍କୁ ଟିକେ ଟିକେ ଭେଟି କହିବାର ଅଛି, କାଲି ପାଇଁ ବ୍ୟବସ୍ଥା କରିବାକୁ ଆମେ ବ୍ୟସ୍ତରେ ଅଛୁ । ପରେ କେବେ ଆସିଲେ ପିଇବୁ । ତା' ପରେ ପଡୋଶୀ ଯେତେବେଳେ ହେବା କେତେଥର ଯିବା ଆସିବା ତ ହେବ, ତେଣୁ ଏଥର ଚା' ନହେଉ । ଆପଣ ଆସନ୍ତାକାଲି ନିଶ୍ଚୟ ଯିବେ ।

ଏଇଠୁ କେତେଦୂର ଆପଣଙ୍କ ଘରଟା ?

ମୋ ସ୍ତ୍ରୀ ହସିଦେଇ କହିଲେ - ଦୂର ନୁହେଁ, ଆପଣଙ୍କ ଗେଟ୍ ସାମ୍ନାଘର ।

ତାଙ୍କର କଥାବାର୍ତ୍ତା ସମୟରେ ମୁଁ ଚୁପ୍ ଥିଲି । ଦୂରତ୍ୱ କଥାରୁ ମୋ ପାଟିରୁ ବାହାରି ପଡ଼ିଲା - ଗୋଟେ କଫିନ୍‌ର ଦୂରତ୍ୱ ।

ମୋ ସ୍ତ୍ରୀ ମୋ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ପଚାରିଲେ କଫିନ୍‌ର ଦୂରତ୍ୱ ମାନେ !

ଏଇ ଛଅଫୁଟ୍ ଦୂର । ତାଙ୍କ ଗେଟ୍‌ରୁ ଆମ ଗେଟ୍‌ର ଦୂରତା ଛଅଫୁଟ୍ ମାତ୍ର ।

ତମର ସବୁ କଥାରେ ଏମିତି-ସିଧା ଛଅଫୁଟ୍ କହିଥିଲେ କ'ଣ ଚଳିନଥାନ୍ତା । ତାଙ୍କ କଥାକୁ କିଛି ଭାବିବେନି ଆଜ୍ଞା ସାହିତ୍ୟିକ ତ ! ସବୁ କଥାରେ ଏମିତି ଟିକିଏ ବୁଲେଇ ବଙ୍କେଇ କହନ୍ତି । ତେବେ ଆମେ ଆସୁଛୁ ।

ଫେରିବା ବେଳେ ମୁଁ ଥରେ ପଛକୁ ଚାହିଁଲି-ନିର୍ନିମେଷ ଭାବେ ଚାହିଁ ରହିଥିଲା ଯୋଡ଼ିଏ ଆଖି । ଯେଉଁ ଆଖି ଦୁଇଟାକୁ ମୁଁ ପନ୍ଦର ବର୍ଷ ହେଲାଣି ଭୁଲିବାକୁ ଚେଷ୍ଟା କରି ମଧ୍ୟ ଭୁଲି ପାରି ନ ଥିଲି । ପନ୍ଦର ବର୍ଷ ଜୀବନର ଚଲାପଥରେ ଖୁବ୍ ଦୀର୍ଘ ସମୟ ହୋଇପାରେ ମାତ୍ର ମୋତେ ଲାଗୁଥିଲା କାଲିପରି । ଆମେ ଘଣ୍ଟା ଘଣ୍ଟା ସମୁଦ୍ର କୂଳରେ ବସି ଗଢୁଥିଲୁ ବାଲିଘର । ବାରମ୍ବାର ଭସାଇ ନେଉଥିଲା ସମୁଦ୍ର । ରାଗିଯାଇ ବର୍ଷା କହୁଥିଲା- ରହରେ ସମୁଦ୍ର, ଆମେ ଏଥର ଇଟା, ସିମେଣ୍ଟରେ ଘର ତୋଳିବୁ । ତୁ ଯେତେ ଚେଷ୍ଟା କଲେ ବି ସେ ଘରର ପାହାଚକୁ ବି ଛୁଇଁ ପାରିବୁ ନାହିଁ ।

ମୁଁ ପଚାରିଲି ସେ ଘରର ନାଁ କ'ଣ ରଖିବ ବର୍ଷା ?

ପ୍ରିତମ ।

ଉହୁଁ,ମୁଁ ନାଁ ବାଛି ସାରିଛି ।

କ'ଣ ?

ବର୍ଷା ।

ନା ବାବା ମୁଁ ବାଛିଥିବା ନାଁ ରହିବ-ପ୍ରିତମ ।

ନା ବର୍ଷା, ନା ପ୍ରିତମ,ନା ବର୍ଷା,ନା ପ୍ରିତମ ।

ଏମିତି ଯୁକ୍ତିତର୍କରେ ଆମେ ଫେରୁ ଘରକୁ-ଗୋଟିଏ ନିର୍ଦ୍ଦିଷ୍ଟ ନାଁରେ ପହଞ୍ଚି ପାରୁନା । ସମସ୍ୟାର ସମାଧାନ ପାଇଁ ମୁଁ କହେ ଘର ଆଗ ତୋଳା ସରୁ ତା'ପରେ ନାଁ ଦେବା ।

ଆମର ବାଲିର ଘର ପରି ପ୍ରେମ ମଧ୍ୟ ସମୁଦ୍ରର ଲହଡ଼ି ଧୋଇନେଲା । ବର୍ଷାର ବାପାଙ୍କର ବଦଳି ହେଲା ଆସାମ । ସେ ଆସାମ ଯିବା ପୂର୍ବରୁ ବର୍ଷା ମୋତେ କହିଲା, ତମେ ଆମ ବିଷୟରେ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରି କିଛି ଗୋଟିଏ ସିଦ୍ଧାନ୍ତ କର । ମୁଁ ଆସାମ ଚାଲିଯିବା ପରେ କ'ଣ କରିବି ?

ବହୁ ସାହସ ସଂଚୟ କରି ମୁଁ ଭେଟିଥିଲି ବର୍ଷାର ବାପାଙ୍କୁ । ତାଂକର ସେଦିନ କଥା ମନେ ପଡ଼ିଲେ ଏବେ ବି ମୋର କାନମୂଳ ଗରମ ହୋଇଯାଏ ।

ମୋତେ ପଚାରିଲେ ତମ ବାପା କ'ଣ କରନ୍ତି ?

ଚପରାଶି ।

ଚପରାଶି ! କେଉଁଠି ?

ଆପଣଙ୍କ ଅଫିସରେ ।

ତମର ଏତେ ଆସ୍ପର୍ଦ୍ଧା ହେଲା କିପରି ମୋ ଝିଅ ତମକୁ ଭଲପାଏ ବୋଲି କହିବାକୁ ? ଗୋଟେ ଚପରାଶିର ପୁଅ ଅତି ବେଶୀରେ କେତେ ବଡ଼ ସ୍ୱପ୍ନଟିଏ ଦେଖିପାରେ ?ଖୁବ୍ ବେଶୀରେ ଗୋଟିଏ କିରାଣୀ ହେବାର ସ୍ୱପ୍ନ-ତା'ଠାରୁ ତ ଅଧିକ ନୁହେଁ । ମୁଁ ଆଉ ଥରେ ତମ ପାଟିରୁ ଯେପରି ନ ଶୁଣେ ତମେ ବର୍ଷାକୁ ଭଲପାଅ ବୋଲି ।

ବର୍ଷା କ'ଣ କହିବାକୁ ଯିବାରୁ ତା' ଗାଲରେ ବସିଥିଲା ଏକ ଶକ୍ତ ଚାପୁଡ଼ା । ମାଡ଼ ଖାଇବା ପରେ ମଧ୍ୟ ସେ କହିଥିଲା-ତମେ ଭାଙ୍ଗିପଡ଼ନି ପ୍ରିତମ ! ମୁଁ ତମ ସାଙ୍ଗରେ ଅଛି ।

ଏହାପରେ ତାଙ୍କ ଘରର ଅର୍ଦ୍ଧଳୀଟି ମୋତେ ଟାଣି ଟାଣି ବାହାରେ ଛାଡ଼ି ଦେଇଥିଲା ।

ତା'ର କିଛିଦିନ ପରେ ସେମାନେ ଚାଲିଗଲେ ଆସାମ । ମୋ ଭଲ ପାଇବାର ପ୍ରତିଶୋଧ ସ୍ୱରୂପ ଚାକିରୀରୁ ଛଟେଇ କରି ଦେଇଥିଲେ ମୋର ବାପାଙ୍କୁ ।

ବାପାଙ୍କ ସାଥିରେ ଗାଁକୁ ଫେରିବା ପରେ ମୋର କଲେଜ ପଢ଼ାବନ୍ଦ୍ ହୋଇ ଯାଇଥିଲା । ସେତେବେଳେ ମୁଁ ଅନୁଭବ କରିଥିଲି ଗୋଟେ ଚପରାଶିର ପୁଅ ହିସାବରେ ମୋର ସ୍ଥିତିକୁ ଆଗରୁ ଚିହ୍ନିନେବାଟା ଉଚିତ୍ ଥିଲା ଧୀରେ ଧୀରେ ପାରିବାରିକ ଅଭାବ ଓ ଚାକିରୀ ପାଇଁ ଧାଁ ଦଉଡ଼ରେ ମୁଁ ଭୁଲିଯାଇଥିଲି ଯେ ମୁଁ କେବେ ପ୍ରେମ କରୁଥିଲି ବୋଲି ।

ମୁଁ ମୋ ଚିନ୍ତାରୁ ଫେରି ପ୍ରକୃତିସ୍ଥ ହେଲି ଯେତେବେଳେ ମୋ ସ୍ତ୍ରୀ କହିଲେ ଗେଟ୍‌ଟା ବନ୍ଦ କରିଦିଅ, ଗାଈ ଗୋରୁ ପଶିଯିବେ ।

ଗେଟ୍‌ଟା ବନ୍ଦ କରିବା ଅବସରରେ ମୁଁ ଦେଖିଲି ଗେଟ୍‌ରେ ଗୋଟି ଏ ମାର୍ବଲ ଫଳକରେ ଲେଖାଯାଇଛି ପ୍ରୀତମ । ମୋ ନାଁଟା ପଢ଼ି ପୁଲକିତ ହେବା ବଦଳରେ ମୁଁ କ୍ଷତାକ୍ତ ହେଉଥିଲି ଭିତରେ ଭିତରେ । ମୋତେ ଲାଗୁଥିଲା ପୁରୁଣା ଗହିଟି ପୁଣି ଥରେ ମଦ୍ଦଚି ଯାଇ ଦରଜ ଦରଜ ଲାଗୁଛି ।

# ମୋହ

ମୁଁ ପିଲାଦିନେ ବହୁତ ଥର ଭାବେ- ଆମ ବାପା କଲିକତାରେ ରହୁଥାନ୍ତେ କି । ବର୍ଷେ ଛଅ ମାସରେ ଥରେ ଥରେ ଘରକୁ ଆସୁଥାନ୍ତେ । ଆମର ବି ଆସୁଥାଆନ୍ତା ବନ୍ଧା ହୋଇ ବିଭିନ୍ନ ପ୍ରକାରର ପୁନିଦା, ଖଜୁରୀକୋଳି,ଆମ୍ବ, ମିଠା,ଚେନାଚୂର ଏବଂ ଆମ ପାଇଁ ଜାମା ପ୍ୟାଣ୍ଟ ଓ କଲିକତି ଖେଳନା,ମୋର ଏସବୁ ଭାବିବାର ପଛରେ ଥିଲା ଆମ ସାହିର ରମା ଭାଇ । ତା' ବାପା ଯେତେବେଳେ କଲିକତାରୁ ଆସେ ସେ ହୋଇଯାଏ ଆମ ମାନଙ୍କ ଭିତରେ ବାଦ୍‌ଶାହା । ନୂଆଜାମା, ପ୍ୟାଣ୍ଟ ସହ ଯୋତାପିନ୍ଧିସେ ଯେତେବେଳେ କିଛି ମିଠା ଓ ଖଜୁରୀ କୋଳି ଧରି ପହଞ୍ଚେ କେବଳ ମୁଁ ନୁହଁ ପ୍ରାୟ ଆମ ସାହିର ସବୁପିଲା ତାକୁ ଘେରି ଯାଇ ତା'ଠୁ ଗୋଟେ ଗୋଟେ ଖଜୁରୀ କୋଳି, କେବେ କେବେ ମିଠାରୁ ଖଣ୍ଡେ ଖଣ୍ଡେ ନେଉ । ମାତ୍ର ଅତି ସତର୍କତା ସହ ସେ ଧରିଥାଏ ତା'ର ଖେଳନା ଓ ପେଁ କାଳୀ, ଯଦି ଆମେ କେହି ପେଁ କାଳୀ ଟିକେ ବଜାଇବାକୁ ମାଗୁ ତେବେ ସେ ତା'ର ଆଗପଟକୁ ଧରି ପଛପଟକୁ ଆମ ପାଟିରେ ପୂରାଇ କହେ-ଫୁଙ୍କ, କାହାର ହୁଏ କାହାର ମଧ ହୁଏନା, ସେ ବିରକ୍ତ ହେଇ ଆମ ପାଟିରୁ କାଢ଼ିନେଇ କହେ-ହେଃ-ଛେପ କରି ଦେଉଛ । ହେଇ ଦେଖ ଏମିତି ବଜାନ୍ତି । ତା'ର ଚାବି ଦିଅ । ଖେଳନାଟିକୁ ଥରେ ଚାବି ଦେଇ ଚଳାଇବାକୁ ଆମ ସମସ୍ତଙ୍କର ଥାଏ ଅତ୍ୟନ୍ତ ଆଗ୍ରହ, ସେହି ଆଗ୍ରହ ପାଇଁ ଘରୁ ଆଚାର,ବାଡ଼ିରୁ ଆମ୍ବ, ବେଳେବେଳେ ପଇସା ବି ଚୋରାଇ ଆଣିବାକୁ ଦେଉ ।

ତା' ବାପା ଆସିବାର କେତେଦିନ ଯାଏ ସେ ରିତିମତ୍ ଗୋଟେ ବାଦଶାହା ହୋଇ ଯାଏ, ଭଳିକି ଭଳି ନୂଆ ଡ୍ରେସ, ଯୋତା ସହ ଖେଳନା ଧରି ବୁଲିବା ବେଳେ ମୁଁ ସ୍ୱାଭାବିକ୍ ଭାବେ ତା' ଭାଗ୍ୟକୁ ଇର୍ଷାକରି ଭାବେ -ଆମର ବାପା କଲିକତାରେ ରହୁ ନଥାନ୍ତେ ? ଘରକୁ ଆସିଲାବେଳେ ଆମପାଇଁ ଆଣୁଥାଆନ୍ତେ ଖେଳନା । ମୁଁ ନୂଆଜାମା , ଯୋତାପିନ୍ଧି ରାଜା ଭଳି ଚାଲିବା ବେଳେ ମୋ ପଛରେ ଧାଉଁ ଥାଆନ୍ତେ ସାହିର ସବୁପିଲା ।

ଖାଲି ରମାଭାଇ ନୁହେଁ.... ତା ବୋଉର ମଧ ଢ଼ଙ୍ଗ ଢ଼ାଙ୍ଗ, ରୂପ ଭେକ ବଦଳିଯାଏ, ତା'

ବାପା ଘରକୁ ଆସିଲେ । ଅଲେଇ ବାଇରୀ ପରି ଫୁରୁଫୁରୁ ଉଡୁଥିବା ବାଳକୁ ବାସ୍ନା ତେଲରେ ଜୁଡୁଜୁଡୁ କରି କୁଣ୍ଡାଇ ସ୍ନୋ ପାଉଡ଼ର ମୁହଁରେ ମାରନ୍ତି । ଭଳିକି ଭଳି ଶାଢ଼ୀ ପିନ୍ଧିବା ସହ ବ୍ଲାଉଜ୍ ପିନ୍ଧା ଦେଖିଲେ ମୋତେ ଲାଗେ ସେମାନେ ଯେମିତି ଏଇନେ କେଉଁ କୁଣିଆଁ ଘରକୁ ଯିବେ । ଆଗରୁ ପଡ଼ା ପଡ଼ିଶାରେ ଘଣ୍ଟା ଘଣ୍ଟା ଧରି ଗପ ଯୋଡୁଥିବା ରମାବୋଉ ଖୁଡ଼ୀଙ୍କ୍ ଆଉ କାହାରି ଘରେ ବସିବାକୁ ତର ହୁଏନି । ଯା' ଘରକୁ ଗଲେବି ଖାଲି ଚଅଁର ପରି ହେଉଥିବେ- ନାଁ ଲୋ ମୁଁ ଯାଉଛି । କଲିକତିଆଙ୍କ କଥା କ'ଣ ତମେ ଜାଣିନ, ପାନରୁ ଚୂନ ଖସିଲେ ଅତୁଆ । ଏବେ ଟିକେ ଶୋଇଛନ୍ତି ବୋଲି ମୁଁ ଏ ସାହିକୁ ଚାଲି ଆସିଛି ନା, ଉଠିଲେ ମାନେ ଗୁଡ଼ାଖୁ ଖୋଜିବେ । ଗୁଡ଼ାଖୁ ମାରି ସାରିଲେ ଚା' । ତାଙ୍କ ଫରମାସୀରେ କ'ଣ ବେଳଅଛି ମରିବାକୁ । ମୁଁ ପରେ ଆସିବି ଲୋ ମା ।

କିଏ ଯଦି ପଚାରିଦିଏ କ'ଣ କ'ଣ ଆଣିଛନ୍ତି ରମା ବାପା ବୋଲି- ବଢ଼ିଲା ପାଦକୁ ପଛକୁ ଫେରାଇ ଆଣି କହନ୍ତି, ପୁନିଦା ସବୁ କ'ଣ ଖୋଲିଲିଣି ? ଆମରତ ମସଲାଠାରୁ ଡ଼ାଲି ତେଲ ପର୍ଯ୍ୟନ୍ତ ଏଠିକା ଦୋକାନରେ କିଣା ହୁଏନା । ସବୁ ଆସିଥିବ । ମୁଁ ଖାଲି ପିଲାଙ୍କ କପଡ଼ା ମୋର ଶାଢ଼ୀ ଆଉ ଏଇ ମିଠା ମିଠି ଖୋଲିଛି ନା । ଗଲାଥର ଆଣିଥିବା ଜିନିଷତ ସରିନି-ଆଉ ଏବେ ତରତର ହେବି କାହିଁକି?

ଖୁଡ଼ୀ ସେଇ କେତେଦିନ ଲାଗନ୍ତି ଯେମିତି ପରିପୂର୍ଣ୍ଣ ସୁଖର ମଣିଷଟିଏ ।

ଖାଲି ଯେ ମୋ ବାପା କଲିକତାରେ ରହୁ ନଥିଲେ ବୋଲି ମୋର ମନଦୁଃଖ ହେଉ ଥିଲା ସେ କଥା ନୁହଁ.... ମୋ ବୋଉର ବି ମନଦୁଃଖ ହେଉଥିବ ନିଶ୍ଚୟ । ସକାଳରୁ ସଞ୍ଜ ସେ ଖଟୁଥିବ ଅହରହ -ଗୋବର ଚଟକା, ଘସିପରା, ଗାଈଗୋରୁ କାମ, ଗୁହାଳ କାମ, ଜାଳ ଯୋଗାଡ଼, ଘରଲିପା, ରୋଷେଇ ବାସ ଇତ୍ୟାଦି, ଦିନ ମାନ ମରିବାକୁ ତର ନଥିବ । ଅଥଚ ବାପା ଘରକୁ ଆସିଲେ ଗରଗର ହେଉଥିବେ- ଗୋରୁ କୁଣ୍ଡା ତୋରାଣୀ ଖାଇଲେ ନାହିଁ, ବାଦାମ୍ ଗଛରୁ ତୋଳା ହେଲାନି, ଅଗାଡ଼ି ମିଶା ଧାନ ପାଛୁଡ଼ା ଗଲାନି, ଖଳାରେ ମୂଷା ବେଙ୍ଗଳା ପକାଇଲେଣି ଇତ୍ୟାଦି ।

ରମାଭାଇର ବୋଉର ସୌଭାଗ୍ୟକୁ ଦେଖି ତା' ମନରେ ନିଶ୍ଚେ ଗୋଟେ ସୁକୁମାର ଇର୍ଷା ହେଉଥିବ । ମନେ ମନେ ତା ଭାଗ୍ୟକୁ ତୁଳନା କରି ଭାବୁଥିବ- ଏ ଯଦି କଲିକତାରେ ରହୁଥାଆନ୍ତେ ମୁଁ ବି ଏମିତି ସାଆନ୍ତାଣୀ ହୋଇ ବୁଲୁଥାଆନ୍ତି । କେବଳ ମନେ ମନେ ସେ ଏ କଥାଟା ଭାବୁଥିଲେ ମୁଁ ହୁଏତ ଜାଣିପାରି ନ ଥାନ୍ତି, ଯେତେବେଳେ ସେ ବାପାଙ୍କର ଅଯଥା ଗାଳି ନଶୁଣି ପାରି କଥା ଲେଉଟାଏ

ହଁ- ଦେଖୁନ କେଡ଼େ ସୁଖରେ ରଖିଛ ? ଭଳି କି ଭଳି ଶାଢ଼ୀ ଗହଣା କରି ଦେଉଛ । ମୁଁ ପିନ୍ଧିକି ବୁଲୁଛି ? ତମ ହାତ ଧରିବା ଦିନ ଠାରୁ ମୋ ଦେହ ହାତ ବି ସ୍ନୋ ପାଉଡ଼ର ମୁହଁ ଦେଖିନି । ତମ ପାଖରେ ଭଲମନ୍ଦ କିଛି ଅଛିନା ସେ ସୋହାଗ କେବେ ଅଛି, ନକହିଲେ ମନବୁଝି କିଣି ଆଣିବ । ଶାଢ଼ି ଛିଣ୍ଡିଲାପରେ ବି ଟଙ୍କା ନାହିଁ ଟଙ୍କା ନାହିଁ କହି ଦଶହାଟ ପାଳି ଗଡ଼ାଉଥିବ । ଖଣ୍ଡେ ଚିରିଲେ ଖଣ୍ଡେ, ହେଇ ପା ଦେଖୁନ, ଦେଖିକରି ଶିଖୁନ ପଡ଼ିଶା ଘରୁ-ରମା ବୋଉତ କେବେ ଶାଢ଼ୀ ପାଇଁ କହିବାର ମୁଁ ଶୁଣିନି । ହେଲେ ରମା ବାପା ମନଜାଣି ଯୋଗାଇଛି ନା କରମ କରିଥିଲା ବୋଲି ସିନା ତା' ହାତଧରି ରାଜରାଣୀ ସୁଖ କରୁଛି, ଛାଡ଼ କାହାକୁ କହିବା ମୋ କରମରେ ତ ଘସିପରା, ଧାନକୁଟା ଲେଖାଯାଇଛି । ମୁଁ ଯେତେ ବାଡ଼େଇ ଛାତି ହେଲେ କ'ଣ ହେବ ?

କେବେ କେବେ ବୋଉର ଓଲଟା ଜବାବ୍‌ରେ ବାପା ଚୁପ୍ ହୋଇ ଯାଆନ୍ତି । ଆଉ କେବେ କଥା ଲେଉଟାଇ କହନ୍ତି - ଯାଉନୁ ମନ ଯଦି ଏତେ ସବସବ କଲିକତିଆ ଘଇତା କରିବୁ । ଶାଢୀ, ଚୁଡ଼ୀ, ସ୍ନୋ, ପାଉଡ଼ର, ବାସନା ତେଲ ସବୁ ମିଳିବ । ତାପରେ ବୋଉ ହୋଇଯାଏ ଚୁପ୍ ହେଲେ ସେ କଥାର ପ୍ରତିକ୍ରିୟାରେ ଦିନେ ଦୁଇଦିନ ମୁହଁ ଲୁଚାଇ ଲୁଚାଇ କାନ୍ଦେ ।

ସେତେବେଳେ ମୋ ପିଲା ବୁଦ୍ଧିରେ ମୁଁ ଭାବୁଥିଲି ବାପା ଆମର ବହୁତ ଅନ୍ୟାୟ କରୁଛନ୍ତି ବୋଉ ପ୍ରତି ।

ବୋଉ ବାପାଙ୍କୁ ଦିନେ ଦୁଇଦିନ ଆଡ଼ ଆଡ଼ ହୁଏ, ରାଗରୁଷା ଚାଲେ, ବାପା କ'ଣ କ'ଣ ବୁଝାନ୍ତି - ବୋଉ ରାଗିକରି କହୁଥିବାର ମୁଁ ଶୁଣେ - କି କଥାରେ ତମେ କେଡ଼େ ବଡ଼ କଥାଟିଏ ନ କହିଲ ? ଅଭିମାନରେ କିଏ କେତେ କଥା ନ କହୁଛି - ହେଲେ ତା' ପାଖକୁ କ'ଣ ଏଇ କଥା ? ତମେ ମୋତେ କ'ଣ ଭାବିଲ କି ? ମୁଁ କ'ଣ ଏଡ଼େ ବଜାରୁଣୀ ହୋଇଛି ପର ମରଦର ସୋହାଗ ଖୋଜୁଛି ?

ବାପା ବୁଝାଉଥିବେ - ରାଗରେ ତମକୁ କ'ଣ କହିଦେଲି ତାକୁ ଗଣ୍ଠିକରି ବସିଛ । ଆଡ଼ ଆଡ଼ ହେଉଛ । ପିଲାଏ ବଡ଼ ହେଲେଣି କ'ଣ ଭାବୁଥିବେ ? ରାତି ଅଧଯାଏ ଚାଲିଥିବ ବାପାଙ୍କର ବୁଝାବୁଝି ଓ ବୋଉର ଅଭିମାନ ଶୁଝା । ସକାଳକୁ ଉଠିଲା ବେଳକୁ ବର୍ଷାଧୁଆ ସକାଳର ଖରାପରି ବୋଉ ଲାଗୁଥିବ ନୂଆ ନୂଆ । ଉଭେଇ ଯାଇଥିବ ତା' ମନରୁ ରାଗରୁଷା ।

ବୋଉ ମନ ଭିତରର ଅପୂର୍ଣ୍ଣ ଇଚ୍ଛାକୁ ମୋ ଭିତରେ ସାକାର କରିବାକୁ ଚାହୁଁ ଥିଲା ତେଣୁ ବାପାଙ୍କ ଠାରୁ ମୋତେ ଏକ ନିଆରା ମଣିଷ କରିବାକୁ ଚାହୁଁଥିଲା । କେବେ ଯଦି ବାପା ମୋତେ କୌଣସି କାମ ବରାଦକରି ଦିଅନ୍ତି କିମ୍ୱା ତାଙ୍କୁ ସାହାଯ୍ୟ କରିବାକୁ ବିଲକୁ ଯିବାକୁ କହନ୍ତି, ବୋଉ ରୋକ୍ ଠୋକ୍ ମନାକରି କୁହେ - ତାକୁ କ'ଣ ତୁମରି ହରଡ଼ ଘଣିରେ ପକାଇବ ନା କ'ଣ ? ତମେ ତ ଦିନରାତି ଖଟିଖଟି ନସ୍ୱାନ୍ତ ହେଉଛ ପେଟ ପୁରୁନି କି ଗାଣ୍ଡି ଲୁଚୁନି । ତା'ପଢ଼ାକମେଇକରି ତାକୁ କାହିଁକି ପୁଣି ଘୋଷାରୁଛ ସେହି ଜୀବନକୁ ? ବାପା ଅସନ୍ତୁଷ୍ଟ ନ ହୋଇ କୁହନ୍ତି - ହଉ ଠିକ୍ ଅଛି ସପନ ଦେଖୁଥାଆଲୋ, ପୁଅ ପାଠପଢି ଚାକିରୀ କରି ବିଦେଶ ଘୂରାଇବ ।

ମୁଁ ପାଠପଢି ସାରି ଚାକିରୀ କଲି । ବୋଉ ଖୁସିରେ ଶାରଳାଙ୍କୁ କଳାଲୁଗା ଓ ବୋଦା ବଳିଦେଲା ଯେମିତି ତା'ର ଦୀର୍ଘ ତପସ୍ୟାର ଫଳ ମୁଁ ପାଇଛି । ଯୋଗକୁ କମ୍ପାନୀ ଚାକିରୀ ହେତୁ ଚାକିରୀରେ ଯୋଗଦେବା ସଙ୍ଗେ ସଙ୍ଗେ ମତେ କ୍ୱାଟର ମିଳିଗଲା । ମୁଁ ବୋଉକୁ କହିଲି - ତୁ ଏବେ ସାଙ୍ଗରେ ଯିବୁ । ରହିବୁ ମୋ ପାଖରେ, ବୋଉ କହିଲା ଏବେଠୁ ଏତେ ବ୍ୟସ୍ତ କାହିଁକି - ତୋ' ବାହାସାହା ପରେ ବୋହୁ ଆସିଲେ ମୁଁ ତ ବଳେ ଯିବି ।

ସେଇ ବୋଉ ଏବେ ମୋ ପାଖକୁ ଆଠ ଦଶ ଦିନହେଲା ଆସିଛି ଯେ ଅଣନିଶ୍ୱାସ୍ୱୀ ହୋଇ ପଡ଼ିଗଲାଣି ଘରକୁ ଯିବାପାଇଁ । ଉପର ମହଲାରେ ଥିବା ମୋ କ୍ୱାଟରଟି ତାକୁ ଲାଗୁଛି ଗୋଟେ ପଂଜୁରୀ ପରି । ବାଡ଼ି ନାହିଁ ବଗିଚା ନାହିଁ, ହାତ ଗୋଡ଼ ଖେଳୁନଥିବା କ୍ୱାଟରଟି ତାକୁ ଲାଗୁଛି ବନ୍ଦୀଶାଳା ପରି । କ୍ୱାଟର କଲଚର ସୀମିତ ସଂପର୍କ, କାହାରି ପାଖରେ ଫୁରୁସତ ନାହିଁ ବସି ଦୁଇପଦ କଥା ହେବାକୁ । ଖାଅ ପିଅ, ଟିଭିଦେଖ, ଅଫିସ ଯାଅ ଦେଖି ଦେଖି ସେ ଶେଷରେ କହିଲା - ମୋତେ ନେଇ ଘରେ ଏବେ ଛାଡ଼ିଦେଇ ଆସ ।

ମୁଁ ବିସ୍ମିତ ହୋଇ ତା ମୁହଁକୁ ଚାହିଁଲାରୁ ସେ କହିଲା - ତୁ ତୋ ବାପାଙ୍କ କଥା ତ ଜାଣୁ । ଭୋଳାନାଥ । କ'ଣ କରୁଥିବେ କେଜାଣି । ସବୁ ଉଜୁଡ଼ି ଉପୁଡ଼ି ଯାଉଥିବ । ଗଛରେ ଗଛେ କଇଁଆ ଥିଲା ସବାଖିଆ ପିଲା ଗୋଟେ ବି ରଖି ନଥିବେ । କଲମୀ ଆମ୍ବ ଗଛ ଓ ସୁନ୍ଦରୀ ଆମ୍ବଗଛରେ ଗଛେ ଲେଖାଏଁ ଆମ୍ବ ନଦି ହୋଇଥିଲା ଏସନ, ମୁଁ ତ ଏ ପଟେ ଆସିଲି ସବୁ ନଷ୍ଟ ବିନଷ୍ଟ ହୋଇ ସାରିଥିବ । ଡ଼ିଆ ବାଇଗଣ ଓ କଖାରୁଙ୍କା ଲଗାଇ ଥିଲି, ତୋ ବାପା କ'ଣ ତାକୁ ଜଗାରଖା କରି ପାରିଥିବେ, ସେ ବି ଉଜୁଡ଼ି ସାରିବଣି । ଆଉ ତୋ ପିଉସୀ ଯାହାଙ୍କୁ ମୁଁ ଘର ଦାୟିତ୍ୱ ଦେଇକରି ଆସିଛି ତାଙ୍କର ତ ଗଂଗାରେ ପାଦେ ତ ଗୟାରେ ପାଦେ । କେଉଁଠି ଗପ ଯୋଡ଼ିଥିବେ ଯଦି ଯୋଡି ଥିବେ

ଏପଟେ ଘର ଉଜୁଡ଼ି ଗଲେବି ନିପା ନ ଥିବ ।

ସେପଟେ ମମତା ତୁଟାଇ ଏଠି କଣ ବେଶି ଦିନ ରହିହେବ । ଆସିଲି ବୁଲି ଗଲି ଏତିକିରେ ମୋର ଖୁସି, ଏ ଚାକିରୀତ ବାମ୍ଭ ଚଢେଇର ବସା, ସେପଟେ ଜଗିରଖି ସାଇତି କରି ରଖିଥିଲେ ସିନା ନଚେତ ଆଜିକାଲି ଭାଇଭଗାରୀ ଯେମିତି ହେଉଛନ୍ତି କିଏ ଉଜୁଡ଼ି ଗଲେ ନାକରେ କାଠି ପୂରାଇ ଛିଂକିବେ ।

ନା ତୁ ଏତେ ଶୀଘ୍ର ଯାଇ ପାରିବୁ ନାହିଁ - ମୁଁ କହିଲି । ଘର ଜଗି ଜଗି ତୋ ଜୀବନ ଯାଇଛି, ଏବେ କିଛିଦିନ ବାହାରେ ରହି ଟିକେ ଆରାମ କର ।

ମୋତେ ବୁଝାଇବା ପରି ସେ କହିଲା - ତୋ ପାଖରେ ରହି ଆରାମ କରିବାକୁ କଣ ମନ ନାହିଁକି, ହେଲେ ସେପଟ କଥାତ ବୁଝିବାକୁ ପଡ଼ିବ । ତୋ ବାପା ଏକା ଲୋକ, ଗାଈ ଗୋରୁ ଝମେଲାରେ ଧନ୍ଦିହୋଇ ପଡୁଥିବେ । ତାଙ୍କର କଣ ଆଉ ବୟସ ଅଛି ଏତେକଥା ଏକା ଏକା କରିବାକୁ ।

ମୁଁ ବୋଉକୁ ପ୍ରସ୍ତାବ ଦେଲି, ଗାଈ ଗୋରୁ ବିକିଦେଇ ଗାଁର ଚାଷ ଭାଗଦେଇ ବାପାଙ୍କୁ ବି ଏଠାକୁ ନେଇ ଆସିବାକୁ ।

ବୋଉ ମୋ ପାଟିରେ ହାତଦେଇ କହିଲା - ସେକଥା ମନରେ ଧରନା, ଆମ ଅନ୍ତେ ତୁ ତୋର ଯାହା କରିବା କଥା କରିବୁ । ଯେତେ ଦିନଯାଏ ଆମର ହାତ ଗୋଡ଼ ଚଳୁଛି ଚାଷ ଭାଗିଁ ହେବନି ! ଆମର ଜଡ଼'ପା ଚାଷ, ଗଛ କଣ ଉପରକୁ ଉଠିଗଲେ ମାଟିରୁ ଚେର ଉଠାଇ ଆଣେ ?

ଶେଷରେ ବୋଉ ଜିଦ୍ ରହିଲା, ସେ ଘରକୁ ଗଲା ମହାଳୟା ଶ୍ରାଦ୍ଧର ଆଳ ଦେଖାଇ । ଘରେ ପହଂଚି ବୋଉ ଆଗ ଦେଖିନେଲା ସବୁ ଜିନିଷ - ଆମ୍ବଗଛ, କଇଁଆ ଗଛ, ଡିଆବାଇଗଣ ଓ କଞ୍ଚା ଲଂକା । ଗାଈ ଗୋରୁଙ୍କୁ ପରସ୍ତେ ଆଉଁଷି ପକାଇଲା ବହୁ ଦିନର ହଜିଲା ପୁଅକୁ ଦେଖିବା ପରି ।

ରାତିରେ ମୁଁ ଏପଟ ଘରେ ଶୋଇଥାଏ - ବାପା ବୋଉକୁ ପଚାରିଲେ ବିଦେଶ ବୁଲିବା ବୋଲି ଏତେ ସପନ ଦେଖୁଥିଲୁ, ଏତେ ସହଳ ଫେରି ଆସିଲୁ ଯେ ? ସେଠି କ'ଣ ଅସୁବିଧା

ହେଲା କି ?

ନା - କିଛି ଅସୁବିଧା ନୁହେଁ, ମୋତେ ଖାଲି ସେଠାରେ ଅଣନିଶ୍ୱାସୀ ଲାଗିଲା ।

ମାନେ ? ବାପା ହସି ହସି ପଚାରିଲେ ।

ସେଠି ପୁଅ ଗୋଟେ କାଚଘରେ ମାଛ ପାଳିଛି । ମୋତେ ଲାଗୁଥିଲା ମୁଁ ସେହି କାଚ ଘରର ମାଛପରି । ନା ମନଭରି ବୁଡ଼ି ପାରୁଛି ନା ପହଁରି ପାରୁଛି । ସେଠି ସବୁକିଛି ଅଛି ହେଲେ ଗାଁ ଭଳି ନୁହଁ, ଗୋଟେ ରୁଟିନ ବନ୍ଧା ଜୀବନ । ସମସ୍ତେ ଖାଲି ଧାଉଁଛନ୍ତି ଘଣ୍ଟାକଣ୍ଟା ସାଥୀରେ । ମୋତେ କେତେଟା ଦିନ ତ ଲାଗିଲା ଗୋଟେ ଯୁଗପରି ।

ତା ହେଲେ ଏତିକିରେ ତମର ସପନ ଭାଙ୍ଗିଗଲା ? ମୁଁ ଠିକ୍ ଜାଣିଥିଲି ।

କ'ଣ ଜାଣିଥିଲ ?

କେବଳ ତମେ କିମ୍ବା ମୁଁ ନୁହଁ, ଗାଁର ମାୟା ଓ ଜୀବନରେ ଯିଏ ଥରେ ପଡ଼ିଛି ସିଏ କଣ ଅନ୍ୟ କେଉଁଠି ବସା ବାନ୍ଧି ପାରିବ ? ଗାଁର ଜୀବନର ଏକ ନିଜସ୍ୱ ମୋହ ଅଛି । ତାକୁ ଏଡ଼ାଇ ପାରିବା କ'ଣ ଏତେ ସହଜ ?

# ଶୂନ୍ୟତାରେ ଶୂନ୍ୟ ସ୍ଥାନ

ବେଳେ ବେଳେ ଛୋଟିଆ ଛୋଟିଆ ଅଭିମାନ ଏମିତି ଭୁଲ ବୁଝାମଣାଟିଏ ସୃଷ୍ଟି କରିଦିଏ ଯେ ସାରା ଜୀବନର ସଂଚିତ ଆବେଗ ଦେଇ ମଧ ଖୋଜି ହୁଏନା ସଂପର୍କର ପରିଭାଷାଟିଏ । ଗୋଟିଏ ବୟସ ଥାଏ ଯେତେବେଳେ ପ୍ରେମର ଅନ୍ଧ ଉଜାଣିରେ ଆସୁଥିବା ଅଭିମାନର ଅହଂକାର ନଥାଏ, ମାତ୍ର ତା' ପରବର୍ତ୍ତୀ ବୟସର ପ୍ରେମ–ବରଂ ପ୍ରେମ ନକହି ସଂପର୍କ କହିଲେ ଠିକ୍ ହେବ । ସେହି ସଂପର୍କର ଚଲାବାଟରେ ଅହଂକାରର ଶିଉଳି ଏମିତି ଲାଗିଯାଏ ଯେ ପ୍ରତି ପାଦେ ପାଦେ ଖସିଯାଏ ପାଦ । ଛୋଟ ଛୋଟ ଅଭିମାନ ଠିଆକରାଇ ଦିଏ ଭୁଲ ବୁଝାମଣାର ପ୍ରାଚୀର । ଯେଉଁ ପ୍ରାଚୀରକୁ ଭାଙ୍ଗି ଦେଖାଇ ଦେଇ ହୁଏନା ଅତୀତର ଭଲପାଇବାଟାକୁ । କେବେ ଯଦି ସେ ପ୍ରାଚୀର ଭାଙ୍ଗି ଦେବାକୁ ଇଚ୍ଛା ହେଉଥିବ ସ୍ୱାଭିମାନ ଭିଡ଼ି ଧରୁଥିବ ପଛରୁ । ସମୟର ଅବକ୍ଷୟରେ ଯଦି କେବେ ଭାଙ୍ଗି ଯାଉଥିବ ସେ ପ୍ରାଚୀର ଲାଗୁଥିବ ଯେମିତି ଆମେ ପରସ୍ପରକୁ କେହି ଚିହ୍ନି ନାହୁଁ । ଯଦିବା ଚିହ୍ନିଛୁ କିନ୍ତୁ ସମୟ ସହିତ ଏମିତି ପରିବର୍ତ୍ତୀତ ହୋଇଯାଇଛି ଯେ ଜୀବନ ସେ ସଂପର୍କର ପରିଭାଷା ଖୋଜିବାଟା ଲାଗୁଥିବ ଗୋଟିଏ ଦର ଦର ଭୁଲା ସ୍ୱପ୍ନ ପରି । ସେ ସଂପର୍କକୁ ଫେରି ଯିବାରତ ସମ୍ଭାବନା ନଥାଏ ମାତ୍ରକ୍ଷୀଣ ଇଚ୍ଛାଟିଏ ଭିତରେ ଉକୁଟି ଆସିବା ବେଳେ ଆଖି ଆଗରେ ନାଚି ଉଠୁଥିବ ଏକ ଉଜୁଡ଼ା ସଂସାରର ଦୃଶ୍ୟ । ଯେଉଁ ଦୃଶ୍ୟକୁ ଇଚ୍ଛାକରି ମଧ ନା ତମେ ନା ମୁଁ କେହି ସାହସକରି ପାରୁନଥିବା ଦେଖିବାକୁ । ଏମିତି ଏକ ଅଭାବିତ ସମୟରେ ପୁଣି ତୁମ ସହ ଅଚାନକ ସାକ୍ଷାତ ବର୍ଷା ।

ଗୁଦଗୁଦାରେ ପିକ୍‌ନିକ୍ ସମୟରେ ମୁଁ ତୁମକୁ ପଚାରିଥିଲି–ପାହାଡ଼ ଦେଖିବ ବର୍ଷା ? ପାହାଡ଼ର ଶୀର୍ଷକୁ ଯାଇ ପୃଥିବୀକୁ ଚାହିଁଲେ ଗୋଟିଏ ମିଷ୍ଟିକ୍ ଅନୁଭୂତି ଆସେ । ଆସ ଥରେ ଅନୁଭବ କର । ସେତେବେଳେ ତମସହ ମୋର ସଂପର୍କ କେବଳ ଏକା ଡ଼ିପାର୍ଟମେଣ୍ଟ ଓ ମୋର ଜୁନିୟର ଜଣେ ଛାତ୍ରୀ ହିସାବରେ । ଏତଦ୍‌ବ୍ୟତୀତ ତମକୁ ଜାଣିବାରଆଉ ଗୋଟିଏ କାରଣ ଥିଲା । ତମେଥିଲ ଆମ ଡ଼ିପାର୍ଟମେଣ୍ଟ ରିଡ଼ରଙ୍କ ଝିଅ । ତମେ ମୋତେ କିଭଳି ଭାବେ ଜାଣିଥିଲ ମୁଁ ଜାଣି ନଥିଲି । ମାତ୍ର ପାହାଡ଼ ଚଢ଼ିବା ବେଳେ କହିଲ ତମେ ମୋର କେତେ ଗୁଡ଼ିଏ କବିତା ପଢ଼ିଛ ବୋଲି କଥାବାର୍ତ୍ତାର ଅବସରରେ କହିଥିଲ ମୋ ସେମିନାର ପେପର୍‌ରେ ମୁଁ ଜନ୍‌ଡ଼ନ୍‌ଙ୍କର ମେଟାଫିଜିକାଲ ଆସ୍‌ପେକ୍ଟ ଉପରେ ବିଶେଷ ମୌଳିକତା ଦେଖାଇ ପାରିନି ବୋଲି । ତମର ଏହି ମନ୍ତବ୍ୟଟି ମୋତେ ଖୁସି ଲାଗିଲା ଯେ ତମେ ଅନ୍ୟ ଝିଅ ମାନଙ୍କ ଭଳି କେବଳ ପ୍ରଶଂସା ସର୍ବସ୍ୱ ନଥିଲ ନିଛକ ମନ୍ତବ୍ୟ ଦେବାରେ ତୁମର ଛଳନା ନଥିଲା ବରଂ

ଥିଲା ଏକ ବାସ୍ତବ ଦୃଷ୍ଟି ଭଂଗି ।

ଆମେ ଚଢୁଥିଲେ ପାହାଡ଼ । ପାହାଡ଼ ଶିଖର ଶିଖରକୁ ଯେତିକି ଯେତିକି ଉଠୁଥିଲେ ପରସ୍ପରର ହୃଦୟର ସେତିକି ସେତିକି ନିକଟବର୍ତ୍ତୀ ହେଉଥିଲେ । ଗୋଟିଏ ଡୀଖରେ ଉଠିବା ସମୟରେ ଛନ୍ଦି ହୋଇ ପଡ଼ିଥିଲା ତୁମର ଶାଢ଼ୀ-ମୁଁ ହାତ ବଢ଼ାଇ ଦେଇଥିଲି ମୋ ହାତକୁ ଧରି ଉଠି ଆସିବା ପାଇଁ । ତମେ କିଛି ସମୟ ଟିକିଏ ସଂକୋଚରେ ରହିଯାଇ ହଠାତ କ'ଣ ଭାବିଲ କେଜାଣି ମୋ ପାପୁଲିରେ ଥୋଇଦେଲ ହାତ । ଗୋଟିଏ ସ୍ୱର୍ଗରପୁଲକ ଆମ ଦୁହିଁଙ୍କୁ ମନ୍ତ୍ରମୁଗ୍ଧ କରିଦେଲା କିଛିକ୍ଷଣ ।

ଆମେ ବସିଲେ ପାହାଡ଼ ଶିଖରରେ-ଯେଉଁଠାରୁ ତଳକୁ ଚାହିଁଲେ ପୃଥିବୀ ଦିଶୁଥିଲା ଏକ ଶାନ୍ତ ସିଲହଟ୍ଟ ଚିତ୍ରପଟ୍ଟ ପରି । ମୁଁ ପଚାରିଲି କେମିତି ଲାଗୁଛି ଶିଖରରୁ ପୃଥିବୀର ଦୃଶ୍ୟ ?

ତମେ କହିଥିଲ ଏ ଦୃଶ୍ୟ କେବଳ ଅନୁଭବର-ଅଭିବ୍ୟକ୍ତିର ଦୃଶ୍ୟନୁହେଁ ।

ଏହାପରେ ଆମେ ଗପିଥିଲେ ଇଂରାଜୀ ସାହିତ୍ୟରୁ ଓଡ଼ିଆ ସାହିତ୍ୟ ଯାଏ । ମାର୍ଲୋରୁ ବେଲୋ ଓ ମୋପସାଁରୁ ମନୋଜ ଦାସ । ଏମିତି ଗପର ଆସର ମଝିରେ ତମେ ପଚାରିଲ ଆମେ ପିକ୍‌ନିକ୍ କାହିଁକି ଆସୁ କହି ପାରିବ ? ମୁଁ କହିଲି ଗୋଟିଏ ଗତାନୁଗତିକ ମନୋଟନସ୍ ଜୀବନରୁ କିଛିଟା ସାମୟିକ ବିଚ୍ୟୁତି ଏବଂ ପ୍ରକୃତି ଭିତରେ ନିଜକୁ ହଜାଇ ଦେବା'ର ମୋହ ଆମକୁ ଆକର୍ଷଣ କରେ ପିକ୍‌ନିକ୍ ପାଇଁ । ତମେ କହିଲ ମୁଁ କିନ୍ତୁ ଭାବୁଛି ଅନ୍ୟ ଦିଗରେ । ମଣିଷ ଭିତରେ ଗୋଟିଏ ଆଦ୍ୟବିମ୍ବ (ଆର୍କେଟାଇପ୍)ରହିଛି । ମଣିଷ ସ୍ତରକୁ ଆସିବାକୁ ହେଲେ ଆମକୁ ଅନ୍ୟ କେତେ ଗୁଡ଼ିଏ ପ୍ରାଣୀ ଜନ୍ମ ନେଇ ଗତି କରିବାକୁ ପଡ଼ିଥାଏ । ଆମର ଅବଚେତନ ମନରେ ସେ ଆର୍କେଟାଇପ୍ ଥାଆନ୍ତି । ବେଳେବେଳେ ମନ ଭିତରେ ଗୋଟିଏ ଅଥୟଭାବ ସୃଷ୍ଟି ହୁଏ ତାକୁ ଖୋଜିବାକୁ, ସେମିତି ଏକ ଖୋଛିବାଟା ଏ ପିକ୍‌ନିକ୍ ମଧ୍ୟ, ଆହୁରି ମଧ୍ୟ ପିକ୍‌ନିକ୍‌ରେ ଆମେ ଅପେକ୍ଷାକୃତ ନିଜକୁ ଟିକିଏ ଅଧିକ ଫ୍ରି ମନେକରୁ ଆମର ଅବଦମିତ ଇଚ୍ଛାକୁ ପରିପ୍ରକାଶ କରିବାପାଇଁ । କାରଣ ପ୍ରକୃତି ଭିତରେ ହଜିଯିବାର ମୁହୂର୍ତ୍ତରେ ଆମର ପ୍ରକୃତ ସ୍ୱରୂପ ବାହାରି ଆସେ । ଏଇ ଯେମିତି ଆପଣ ଆଜି ମୋତେ ଡ଼ାକି ପାରିଲେ ପାହାଡ଼ ଚଢିବା ପାଇଁ ଏବଂ ମୁଁ ବିନା ଦ୍ୱିଧାରେ ଗ୍ରହଣ କରିନେଲି ଆପଣଙ୍କ ପ୍ରସ୍ତାବ । ଏହା କ'ଣ ଆମ ଭିତରେ ଥିବା ଅବଦମିତ ଇଚ୍ଛାର ପରିପ୍ରକାଶ ନୁହେଁକି ?

ମୁଁ ଯେଉଁ କଥାଟିକୁ ଶଂକା ଓ ସଂକୋଚ ପାଇଁ କହି ପାରୁନଥିଲି ତମେ ତାକୁ ଖୁବ୍ ସୁନ୍ଦରଭାବରେ

ବୁଲାଇ କହିଦେଲ । ତୁମର ମନ୍ତବ୍ୟ ପରେ ଆମେ ଦୁହେଁ କିଛିକ୍ଷଣ ନୀରବ ରହିଲେ । ତା'ପରେ ତମେ ସମସ୍ତ ସଚେତନ ହୋଇଯାଇ କହିଲ ବହୁତ ସମୟ ହେଲାଣି-ଭୋଜି ବି ପ୍ରସ୍ତୁତ ହୋଇ ସାରିବଣି ଯିବା ଚାଲନ୍ତୁ । ଆମେ ଓହ୍ଲାଉଥିଲେ ତଳକୁ । ଯେତିକି ଯେତିକି ତଳକୁ ଓହ୍ଲାଉଥିଲେ ସେତିକି ନିକଟବର୍ତ୍ତୀ ହେଉଥିଲେ ପରସ୍ପରର । ପାହାଡ଼ ଚଢିବା ବେଳ ଅପେକ୍ଷା ଓହ୍ଲାଇବା ବେଳେ ମୁଁ ଟିକିଏ ନିଃସଂକୋଚ ହୋଇଯାଇ ତମ ନିରାପଦ ଅବତରଣରେ ସାହାର୍ଯ୍ୟ କରୁଥିଲି, ତଳକୁ ଓହ୍ଲାଇଲା ପରେ ମୋତେ ଲାଗିଲା ଯେମିତି ପୃଥିବୀର ଚିତ୍ରପଟ ମୋ ପାଇଁ ହଠାତ୍ ବଦଳି ଯାଉଛି । ହୃଦସ୍ତ ଭିତରେ ଗୋଟିଏ ଅପୁର୍ବ ପୁଲକ ସହ ଥିଲା ଉଦାର ଉଦାର ଭାବ ।

ହଷ୍ଟେଲକୁ ଫେରିବା ପରେ ଗୋଟିଏ ଉଛନ୍ନ ଉଛନ୍ନ ଭାବ ମୋତେଆଛନ୍ନ କରି ରଖିଲା ପରି ଲାଗୁଥାଏ । ଲାଗୁଥିଲା ଯେମିତି ତମକୁ ମୋର ଅନେକ କିଛି କହିବାର ଥିଲା ମାତ୍ର ମୁଁ କିଛି କହି ପାରିନି । ଏମିତି ଅସ୍ଥିର ଭାବ ନେଇ ସେଦିନ ରାତିରେ ମୁଁ ଲେଖିଥିଲି କବିତାଟିଏ ଯାହାକି ପରେ ଗୋଟିଏ ଦୈନିକ ସମ୍ବାଦ ପତ୍ରର ସୃଜନୀ ପୃଷ୍ଠାରେ ପ୍ରକାଶ ପାଇଥିଲା । କବିତାଟି ପ୍ରକାଶ ପାଇବା ଦିନ ମୁଁ ସୁଯୋଗ ଖୋଜୁଥିଲି କବିତାଟି ତୁମକୁ ଭେଟିଦେବା ପାଇଁ । ମାତ୍ର ମୋତେ ସୁଯୋଗ ଦେବା ପୂର୍ବରୁ ତମେ ମୋତେ କହିଲ କ୍ଲାସ ପରେ ମୋର ଆପଣଙ୍କ ସହ ଟିକିଏ କାମ ଅଛି- ଅପେକ୍ଷା କରି ପାରିବେ ? ମୋର ଉତ୍ତରକୁ ଅପେକ୍ଷା ନ କରି ତରତରରେ ଚାଲି ଯାଉ ଯାଉ କହିଲ ସାର କ୍ଲାସକୁ ଗଲେଣି କ୍ଲାସ ପରେ କଥା ହେବା ।

ମୁଁ ସେଦିନ କେମିତି ବିଚିତ୍ର ମାନସିକ ବ୍ୟସ୍ତତା ଭିତରେ ସେତିକି ସମୟ ଅପେକ୍ଷା କରିଥିଲି ତମେ ଜାଣ ? ମୋତେ ଲାଗୁଥିଲା କାସବିଏଙ୍କା ପରି ମୁଁ ଠିଆ ହୋଇଛି ତମର ପରବର୍ତ୍ତୀ ଆଦେଶକୁ ଅପେକ୍ଷାକରି ଗୋଟିଏ ଜଳନ୍ତା ସମସ୍ତର ଜାହାଜ ଉପରେ । ସେ ଦିନ ହିଁ ପ୍ରଥମ ଥର ପାଇଁ ଉପଲବ୍‌ଧି କଲି ଅପେକ୍ଷାର ପ୍ରତିଟି ମୁହୂର୍ତ୍ତ କେତେ ଦୀର୍ଘ ସତେ ! ତମେ କ୍ଲାସ ସାରି ଆସିବା ପରେ କହିଲ ଏବେ ଏଠାରେ ଜୁନିସ୍ବର ପିଲା ମାନଙ୍କ କ୍ଲାସ ଅଛି- ବାପା କ୍ଲାସ ନେବେ ତେଣୁ ଚାଲନ୍ତୁ ଆମେ ଲାଇବ୍ରେରୀ ଆଡେ ଯିବା, ରିଡ଼ିଂ ରୁମ୍‌ର ଗୋଟିଏ କୋଣକୁ ଯାଇ ଆମେ ସାମ୍ନା ସାମ୍ନି ଦୁଇଟି ଚେୟାରରେ ବସିଲେ । ତମେ ତମର କ୍ଲାସନୋଟ ଭିତରୁ ବାହାର କଲ ପେପର କଟିଂ ଟିଏ-ଯେଉଁଠି ଥିଲା ମୋର କବିତା ।

ମୁଁ ମନେ ମନେ ପ୍ରମାଦ ଗଣୁଥିଲି ।

କବିତାଟି ମୋତେ ଦେଖାଇ ସାରି ତମେ କହିଲ- କବି ମାନଙ୍କୁ ଭଲ ପାଇ ବସିଲେ ଏମିତି ହଟହଟା ହେବାକୁ ହୁଏ ।

ମୁଁ ଟିକିଏ ଆଶ୍ୱସ୍ତ ହୋଇଯାଇ କହିଲି-ତମେ ତା ହେଲେ ମୋତେ ଭଲ ପାଇ ବସିଛ ?

ତମେ ନିଜେ କହିଥିବା କଥା ପ୍ରତି ସଚେତନ ହୋଇଯାଇ ସଂଗେସଂଗେ କହିଲ ମୁଁ କ'ଣ କହୁଥିଲି କି........

କ'ଣ ?

ତମେ ମୋ ମୁହଁକୁ କିଛି ସମୟ ଚାହିଁ ଧିରେ ହସିଦେଲ, ତା'ପରେ କହିଲ ଜାଣନ୍ତି ମୋ ସାନ ଭଉଣୀ ବିନ୍ଦୁ ଏକବିତାଟି ପଢ଼ି କ'ଣ କହିଲା ।

କ'ଣ କହିଲା ?

'ଟୁ ମଚ୍ ଇମୋସନାଲ ।'

ସତେ !

ହଁ । ମୋର ଆପଣଙ୍କୁ ଆଉ ଗୋଟିଏ କଥା କହିବାର ଅଛି । ଏବେ ଓ ଏହି ସମୟରେ ଏତେଟା ଇମୋସନାଲ ଠିକ ନୁହେଁ । ସେମିଷ୍ଟର ଉଠିଯାଇ ପୁଣି ଟ୍ରାଡ଼ିସ୍ନାଲ ହୋଇ ଯାଇଛି ଆପଣଙ୍କ ଇୟରରୁ । ତେଣୁ ପ୍ରଥମେ ନିଜ କ୍ୟାରିଅର ପ୍ରତି ଦୃଷ୍ଟି ଦେବେ ।

ଏ ତମର ଉପଦେଶ ନା ଏକ ନିରାପଦ ଭବିଷ୍ୟତ ପାଇଁ ଏକ ପରିକଳ୍ପିତ ଯୋଜନା ?

ଆପଣ ଯାହାବି ଭାବି ପାରନ୍ତି ।

ଯଦି ତୁମର ଉଦ୍ଦେଶ୍ୟ ପ୍ରଥମଟି ହୋଇଥାଏ ତେବେ ମୁଁ ଗ୍ରହଣ କରିବାକୁ ଚେଷ୍ଟା କରିବି ମାତ୍ର ଦ୍ୱିତୀୟଟିକୁ ନୁହଁ ।

ମାନେ !

ଏହାର ଅର୍ଥ ନୁହେଁ ଯେ ମୁଁ ତୁମର ଭଲ ପାଇବାକୁ ଗ୍ରହଣ କରୁନି ବୋଲି, ମାତ୍ର ଭଲ ପାଇବା ଭିତରେ ସ୍ୱାର୍ଥକୁ ମୁଁ ପସନ୍ଦ କରେନା ।

ବିନ୍ଦୁ ତେବେ ଠିକ୍ କହୁଥିଲା ' ଟୁ ମଚ୍ ଇମୋସନାଲ୍' ମାତ୍ର ଆଉ ଗୋଟିଏ କଥା କହିବାକୁ ଭୁଲିଯାଇଛି ।

କ'ଣଟା ?

ବୁଦ୍ଧୁ ।

କ'ଣ କହିଲ- ମୁଁ ବୁଦ୍ଧୁ ?

ନୁହେଁତ ଆଉ କ'ଣ ? ଏତିକି କଥା ବୁଝିପାରୁ ନାହାନ୍ତି । ଆପଣଙ୍କର ଗୌରବ ଯେ ମୋ ପାଇଁ ଗର୍ବର କାରଣ ।

ହଉ ଠିକ୍ ଅଛି- ତମର ଉପଦେଶ ହେଉ ବା ଆଦେଶ ହେଉ ମୁଁ ମାନିବାକୁ ଚେଷ୍ଟା କରିବି ।

ମୋ ପରୀକ୍ଷା ପରେ ଯେଉଁଦିନ ଆମ ଭବିଷ୍ୟତ କାର୍ଯ୍ୟପନ୍ଥା ଉପରେ ଆଲୋଚନା କରିବାକୁ ତମ ପାଖକୁ ଗଲି-ସେ ଦିନ ମୋତେ ଚକିତ କରିଦେଇ ତୁମେ କହିଲ ଆପଣ ତ ବହୁତ ସ୍ୱାର୍ଥପର ?

ମୁଁ କିଛିକ୍ଷଣ ନିଜକୁ ତର୍ଜମା କରିବା ଭିତରେ ତମେ କହିଲ-ସ୍ୱାର୍ଥପର ଏଇଥି ପାଇଁ ଯେ ନିଜର କାମ ସରିଯିବା ପରେ ମୋ ପାଇଁ ବିଲକୁଲ ଚିନ୍ତା ନାହିଁ । ମୋତେ କୌଣସି ଉପଦେଶ ଦେବା କଥା ନାହିଁ କ'ଣନା ଆମେ ଏଇନେ କ'ଣ କରିବା ।

ମୁଁ ଭାବୁଥିଲି ମୁଁ ବୋଧେ ତୁମକୁ ଠିକ୍ ଭାବେ ଉପଲବ୍‌ଧି କରି ପାରିନି । ପ୍ରେମରେ ଯେତିକି ମାପଚୁପ୍ କ୍ୟାରିଅର ପାଇଁ ସେତିକି ସତର୍କ । ନିଜ ଯୋଜନାକୁ ସବୁ ନିଜ ଭିତରେ ରଖି କହିଲି ହଉ ଠିକ୍ ଅଛି ତମ ପରୀକ୍ଷା ପରେ ଏ ବିଷୟରେ କଥା ହେବା ।

ଏହା ପୂର୍ବରୁ ଆହୁରି ଗୋଟିଏ ସର୍ତ୍ତ ତମେ ରଖିଲ ଯେ ତମ ପରୀକ୍ଷା ନ ସରିବା ଯାଏ ମୁଁ ତୁମକୁ ଚିଠି ଲେଖି ପାରିବି ନାହିଁ । ଚିଠି ଲେଖିଲେ ଇମୋସନ୍ ବଢ଼ିବ ଯାହା ତୁମକୁ ବାରମ୍ବାର ଡ଼ିଷ୍ଟର୍ବକରି ପଢ଼ାରେ କ୍ଷତି ଘଟାଇବ ।

ମୁଁ କେବଳ ଲକ୍ଷ୍ୟ କରୁଥିଲି ପ୍ରେମ ସହ ବ୍ୟବହାରିକ ଜୀବନ ପ୍ରତି ଥିବା ତୁମର ବାସ୍ତବ ଦୃଷ୍ଟି ଭଙ୍ଗିକୁ । ଅଗତ୍ୟା ତୁମର ପ୍ରସ୍ତାବରେ ବାଧ୍ୟ ହୋଇ ରାଜି ହେଲି ।

ଏହାର କିଛିଦିନ ପରେ ଖବର ପାଇଲି ତମେ ସାଇକୋପେସେଣ୍ଟ ହୋଇ ଟ୍ରିଟ୍ ମେଣ୍ଟ ହେଉଛ ବୋଲି । ପ୍ରଥମେ ମୁଁ ବିଶ୍ୱାସ କରିପାରୁନଥିଲି ଯେ ତମ ଭଳି ଜଣେ ଦୃଢ଼ମନା ଝିଅ ସାଇକୋପେସେଣ୍ଟ ହୋଇପାରେ ବୋଲି ।

ତଥାପି ଗଲି ତମକୁ ଦେଖା କରିବାକୁ । ବଡ଼ କଷ୍ଟରେ ବିନ୍ଦୁକୁ କହି ତମର ସାକ୍ଷାତ ପାଇଲି । ଡ଼ାକ୍ତରଙ୍କ ବାରଣ ପାଇଁ ବିନ୍ଦୁ ମନା କରୁଥିଲା ଦେଖା କରିବାକୁ ମାତ୍ର ମୋ ଅନୁରୋଧ ଏଡ଼ି ପାରିଲା ନାହିଁ । ମାତ୍ର ଆମ ସାକ୍ଷାତର କୌଣସି ମୂଲ୍ୟ ନଥିଲା କାରଣ ସେତେବେଳେ ତମେ ମୋତେ ଚିହ୍ନିବାର ସ୍ତରରେ ନଥିଲ । ମୁଁ ଫେରିଥିଲି ଦୁଃଖରେ । ଅପେକ୍ଷା କଲି ତମେ ଭଲ ହେଲାପରେ ତମଠାରୁ ଚିଠି ପାଇଲେ ଯିବି ବୋଲି ।

ତମେ ଭଲ ହୋଇଗଲ ଖବର ପାଇଲି । ତମ ଚିଠିକୁ ଅପେକ୍ଷାନକରି ମୁଁ ଗଲି ଭେଟିବା ପାଇଁ । କିନ୍ତୁ ସେତେବେଳେ ମୋତେ ଲାଗିଲା ତମ ଠାରୁ କୌଣସିଉତ୍ସାହ ଜନକ ପ୍ରତିଶ୍ରୁତି ପାଇବା ପରିବର୍ତ୍ତେ ତମେ ଯେମିତି ଯୋଜନାବଦ୍ଧ ଭାବରେ ମୋ ଠାରୁ ଦୁରେଇ ଯାଉଛ । ତମର ଏତାଦୃଶ ବ୍ୟବହାରରେ ମୋ ଭିତରେ ସୃଷ୍ଟି ହୋଇଥିଲା ଅଭିମାନ । ଅଭିମାନ ନକହି ଅହଙ୍କାର କହିଲେ ଠିକ୍ ହେବ । ଯେଉଁ ଅହଙ୍କାରକୁ ନେଇ ମୁଁ ଦୂରେଇ ଆସିବାକୁ ଚେଷ୍ଟାକଲି ତୁମଠାରୁ । ଦୂରେଇ ଆସିଲି ସତ-ସତରେ କ'ଣ ଦୂରେଇ ଦେଇ ପାରିଲି ସବୁକିଛି ?

ଏହାର ବର୍ଷକ ପରେ ମୋର ଜଣେ ବଂଧୁଙ୍କ ଠାରୁ ବିବାହ ନିମନ୍ତ୍ରଣ ପତ୍ରଟିଏ ପାଇଲି- ସେଇଟିକୁ ଦେଖି ମୁଁ ଚମକି ପଡ଼ିଲି । ସେଇଟି ଥିଲା ବିନ୍ଦୁ ସହ ତା'ର ବିବାହ ନିମନ୍ତ୍ରଣ ପତ୍ର । ସେଇଟିକୁ ଦେଖି ମୁଁ ଭାବିନେଲି ଯେ ତମେ ଏହା ଭିତରେ ନିଶ୍ଚୟ ବିବାହ କରି ସାରିଛ ନଚେତ୍ ତମ ସାନ ଭଉଣୀ କିପରି ବାହା ହୋଇ ପାରିଥାନ୍ତା ? ତେଣୁ ତା'ର ପରବର୍ତ୍ତି ସମୟରେ ମୁଁ ସ୍ୱୀକାର କରିନେଲି ମୋ ବାହାଘର ପ୍ରସ୍ତାବ ।

ଏହା ଭିତରେ ଅନେକ ବର୍ଷ ବିତି ଯାଇଛି ନା ବର୍ଷା ? ବୟସର ଦାଗ ଆମ ଦେହ ଉପରେ ଆଂକି ଯାଇଛି ତା'ର ଚିହ୍ନ । ମୁଣ୍ଡର ବାଳସବୁ ଚିହ୍ନେଇ ଦେଉଛି ବୟସକୁ । ସେ ଦିନ ଯାଇଥିଲି ମୋ ଝିଅର ଆଡ଼ମିଶନ ପାଇଁ କଲେଜକୁ ଟ୍ରାନସଫର କେଶରେ ଆଡ଼ମିଶନ ତ ହୋଇଗଲା । ମାତ୍ର ସମସ୍ୟା ଥିଲା ହଷ୍ଟେଲ ସିଟ୍‌ଟିଏ ପାଇଁ । କାରଣ ମୋର ବଦଳି ଷ୍ଟେସନ କଲେଜ ଠାରୁ ଥିଲା କୋଡ଼ିଏ କିଲୋମିଟର ଦୂର-ଝିଅ ପିଲାଟା ପକ୍ଷରେ ଏତେ ଦୂର ଯିବା ଆସିବା କରିବା ସମ୍ଭବ ନୁହେଁ ତେଣୁ ସନ୍ଧ୍ୟାରେ ଯାଇଥିଲି ଲେଡ଼ିଜ ହଷ୍ଟେଲର ସୁପରିନ୍‌ଟେଣ୍ଡେଟ୍‌ଙ୍କ ପାଖକୁ । ତୁମେସୁପରିନ୍‌ଟେଣ୍ଡେଟ୍ ଅଛ ବୋଲି ଜାଣିଥିଲେ ମୁଁ ଯାଇ ନଥାନ୍ତି ବୋଧେ । ମାତ୍ର ତମ ଅଫିସ ଭିତରେ ପହଞ୍ଚି ସାରି ଆଉ ଫେରି ଆସିବାର ଉପାୟ ନଥିଲା । ମୋଟା କାଚର ଚଷମା ତଳୁ ତମେ ମୋତେ ଚାହିଁଲ । ତୁମର ସେହି ମହୂର୍ତ୍ତର ମୁହଁର ଭାବକୁ ମୁଁ ଲକ୍ଷ୍ୟ କରିଛି । ପାଖରେ ଛିଡ଼ା ହୋଇଥିଲେ ତୁମର ଛାତ୍ରୀ ମାନେ- ତେଣୁ ଖୁବ୍ ସୌଜନ୍ୟ ଦେଖାଇ କହିଲ ବସିବାକୁ । ତମେ ତମର ଛାତ୍ରୀ ମାନଙ୍କ କାମସାରି ବିଦାୟ କରିବା ଅବସରରେ ମୁଁ ଚିନ୍ତା କରୁଥିଲି ମୋ ଝିଅର ହଷ୍ଟେଲ ସିଟ୍ ପାଇଁ ତମକୁ କହିବି କି ନାହିଁ ।

ତମେ କାମ ସାରିବା ପରେ କିଛି ସମୟ ଚିନ୍ତାକଲ କ'ଣ କହିବା ନକହିବ । ଭିତରେ ଭିତରେ ବିତୁଥିବା ତମର ନିରବତାକୁ ଲକ୍ଷ୍ୟ କରି ମୁଁ କହିଲି ମୋର ଜଣେ ବଂଧୁ ପତ୍ନୀ ଏଇ କଲେଜରେ ମ୍ୟାଡ଼ମ୍ ଥିଲେ । ତାଙ୍କ କ୍ୱାଟରଟା ଜାଣି ପାରିଲି ନାହିଁ ତେଣୁ ହଷ୍ଟେଲକୁ ଆସିଥିଲି ପଚାରିବା ପାଇଁ ।

କିଏ ?

ରେଣୁକା ମହାନ୍ତି ।

ଓହୋ-ସେତ ଗତମାସ ଏଠାରୁ ଫୁଲବାଣୀ ବଦଳି ହୋଇଯାଇଛନ୍ତି ।

କ୍ଷମା କରିବେ ଆପଣଙ୍କର ଯଥେଷ୍ଟ ସମୟ ମୁଁ ନଷ୍ଟ କରିଦେଲି ।

ଆଛା ମୁଁ ଆସୁଛି । ହାତ ଉଠି ଯାଇଥିଲା ନମସ୍କାରଟିଏ କରିବା ପାଇଁ ମାତ୍ରପର ମୁହୂର୍ତ୍ତରେ କ'ଣ ଭାବିଲି କେଜାଣି ନମସ୍କାର କରି ପାରିଲି ନାହିଁ ।

ତମେ କିଛି କହିବ କହିବ ହୋଇ କହିପାରୁ ନଥିଲ । ଶେଷରେ ଏତିକି ମାତ୍ର ପଚାରିଲ ଏବେ ଏଠି କେଉଁଠି ରହୁଛନ୍ତି ?

ନା-ମୁଁ ଏଠାରେ ରହୁନି । ଏଠାରୁ କୋଡ଼ିଏ କି.ମି. ଦୂରରେ ଥିବା ଗୋଟିଏ ଜାଗାକୁ ମୋରବଦଳି ହୋଇଛି ଗତମାସ ।

ଆମେ ଉଭୟେ ଚାହୁଁଥିଲେ କିଛି ଗପସପ କରିବାକୁ । ମାତ୍ରମୁଁ ବୁଝି ପାରୁ ନଥିଲି କେଉଁଟା ଆମ ଉଭୟଙ୍କୁ ପ୍ରତିରୋଧ କରୁଥିଲା ଟିକିଏ ଅନ୍ତରଙ୍ଗ ହୋଇ ଅତୀତକୁ ଫେରି ଯିବାକୁ । ଆମର ଭୂଲ ବୁଝାମଣା ନା ଅହଂକାର ।

ତମ ପାଖରୁ ଫେରି ଆସିଲି ସେଦିନ । ଆଜି ତୁମର ଏ ଚିଠି, ସମ୍ବୋଧନ ବିହୀନ ତମର ଏ ଚିଠି । ମୁଁ ଚିଠିଟିକୁ ଯେତିକି ପଢୁଛି ସେତିକି ଆଶ୍ଚର୍ଯ୍ୟ ହେଉଛି । ମୋ ନିଜ ଠାରୁ ବି ତମେ ମୋର ଅଧିକ ଖବର ରଖିଛ । ଅତୀତକୁ ଅବତାରଣା କଲାବେଳେ ନିଜ ଉପରକୁ ଟାଣି ନେଇଛ ସବୁ ଦୋଷ ଜଣେ ମାନସିକ ରୋଗୀ ସହ ମୋ ଜୀବନକୁ ଯୋଡ଼ି ମୋତେ ଅସୁଖି ନକରିବା ପାଇଁ ତମେ ଇଛାକୃତ ଭାବେ ଦୂରେଇଗଲ ମୋଠାରୁ ଏବଂ ବରିନେଲ ସନ୍ୟାସ । ମୁଁ ତୁମର ତ୍ୟାଗକୁ ତାରିଫ କରୁଛି ମାତ୍ର କେବେ ତୁମର ପ୍ରେମକୁ ତାରିଫ କରି ପାରିବି ନାହିଁ ।

ଚିଠିର ଶେଷରେ ତମେ ଲେଖିଛ '' ଅନେକ ଚିନ୍ତା ଓ ଚେଷ୍ଟା କରି ମଧ ସମ୍ବୋଧନ ଶବ୍ଦଟିଏ ଖୋଜି ପାଇଲି ନାହିଁ । ଏବେ ଆମେ ଅତିକ୍ରାନ୍ତ ବୟସରେ ତେଣୁ ଅନୁରୋଧ ଆପଣ ନିଜ ଇଛା ଅନୁସାରେ ସମ୍ବୋଧନ ଜାଗାର ଶୂନ୍ୟସ୍ଥାନଟିକୁ ପୂରଣ କରି ଏ ଚିଠିଟିକୁ ଫେରାଇ ଦେବେ ।''

ତମ ଚିଠି ପାଇବା ପରଠୁ ମୁଁ ଖୋଜୁଛି ସମ୍ବୋଧନ ଶବ୍ଦଟିଏ । ମାତ୍ର କୌଣସି ସଠିକ୍ ଶବ୍ଦଟିଏ ପାଇପାରୁନି ତୁମକୁ ସମ୍ବୋଧନ କରିବାକୁ । ଭାବୁଛି ଏ ଜନ୍ମରେ ପାଇବି କି ନାହିଁ । ସମ୍ବୋଧନ ଜାଗାରେ ତମେ ଛାଡ଼ି ଥିବା ଶୂନ୍ୟସ୍ଥାନଟି ବୋଧେ ଏମିତି ଶୂନ୍ୟତାରେ ରହିଯିବ ଜନ୍ମ ଜନ୍ମାନ୍ତର ଲାଗି ।

# ନଈବଢ଼ିର ଦୃଶ୍ୟ

ଖବରକାଗଜରୁ ଆମ ଅଞ୍ଚଳର ବନ୍ୟାର ଖବର ପଢୁଥିଲି । ପିଲାଦିନୁ ବନ୍ୟା ଯେହେତୁ ଆମର ଦେହ ସୁହା ହୋଇଯାଇଥିଲା, ତେଣୁ ବନ୍ୟା ସଂପର୍କିତ ଖବର ମୋ ମନରେ କୌଣସି ଆଶଂକା କିମ୍ବା ଉଦ୍‌ବିଗ୍ନ ଆଣି ପାରିନଥିଲା । ଏତଦ୍ ବ୍ୟତୀତ ଆମ ଗାଁକୁ ବନ୍ଧଦେଇ ବନ୍ୟା ପ୍ରତିରୋଧ କରାଯାଇଥିବାରୁ ବନ୍ୟା ଫଳରେ ଯେ କୌଣସି ବିପତ୍ତି ହଠାତ୍ ଆସିଯିବ ସେ ଭୟ ବି ନ ଥିଲା । କେବଳ ଯା' ଚାଷ ଜମିତକ ବନ୍ୟା ଫଳରେ କ୍ଷତିଗ୍ରସ୍ତ ହୁଏ । ଯେଉଁଟା ଚିରାଚରିତ ଭାବେ ଆମେ ଦେଖି ଆସିଥିଲୁ ।

ତଥାପି ବନ୍ୟାପରେ ବୋଉ ପାଖରୁ ଆସିଥିବା ଚିଠିଟିକୁ ମୁଁ ଖୁବ୍ ଆଗ୍ରହ ଓ ତରବରରେ ଖୋଲିଲି । ବୋଉର ଚିଠି ଯେ ଗୋଟେ ରାମାୟଣ, ଚିଠିର କଳେବରରୁ ମୁଁ ତାହା ଅନୁମାନ କରିନେଲି । ସେ ଯେତେବେଳେ ଚିଠି ଦିଏ ଗାଁର ଛୁତିକା,ମୃତିକା,ବିବାହ,ବ୍ରତ ଠାରୁ ଆରମ୍ଭ କରି ଗାଁର ଜମିଜମା ଗଣ୍ଡଗୋଳ, କାହାପୁଅ କ'ଣ ପାଶ୍‌କଲା, କିଏ ଚାକିରୀ ପାଇଲା ଇତ୍ୟାଦିର ଗୋଟେ ଲମ୍ବା ଧାରା ବିବରଣୀ ଥାଏ । ଏଥରବି ସେମିତି ଥିବ ବୋଲି ମୁଁ ଧରିନେଇଥିଲି ।

ବୋଉ ପ୍ରଥମେ ଆରମ୍ଭ କରିଥିଲା ବନ୍ୟାର ଧାରା ବିବରଣୀ-ତୁ ତ ଖବର କାଗଜରୁ ନିତି ପଢୁଥିବୁ ବନ୍ୟା ବିଷୟରେ ତୋତେ ଅଧିକ କ'ଣ ଲେଖିବି, ତମ ଗାଁରେ ସିନା ବନ୍ୟାର ସୁଅ ନାହିଁ, ହେଲେ ପାଳିମି, ନାଟରା ଆଡୁ ତଳପାଣି ଭିଡ଼ି ଆସିଲା । ଏ ସନ ତ ନାହିଁ ନଥିବା ବର୍ଷା ଗଡ଼ିଆ ପୋଖରୀତ ଆଗରୁ ପୁରିକି ଥିଲା, ତଳପାଣି ଭିଡ଼ିବାରୁ ବାଡ଼ି ଘର ସବୁ ଭର୍ତ୍ତି, ଆମ ବାଡ଼ିପଟ ଗୁହାଳ ଭିଥ ନଡ଼ିଆଗଛ ଯାଏ ପାଣି ଉଠି ଆସିଥିଲା, ଏଥିରୁ ଜାଣିବୁ ପାଣି କେତେ ହୋଇଥିଲା । ବ୍ଲକରୁ ଚାରା ଆଣି ଯେଉଁ ଭୂଷାବଳୀ କଦଳୀ ଚାରା ତୋ' ବାପା ଲଗାଇଥିଲେ-ସହଜେତ ସେଗୁଡ଼ା ଛୋଟ ଛୋଟ ଗଛ, ତା' ଉପରେ ମଣିଷେ ଉଂଚର ପାଣି । ପାଣି କମିଲା ବେଳକୁ ଗୋଟେ ବି ଗଛ ନାହିଁ,ସାତଆଠକାନ୍ଧୀ କଦଳୀ ଫଳିଥିଲା ସେ ବି ଗଲା ତଳ ବାଡ଼ିକୁତ ଯାଇହେଲା ନାହିଁ, ଗଛେ ପାଚିଲା ତାଳ ପାଣିରେ ଗଲା, ଆମ ଗାଁ ପାଟତ ଜଳାର୍ଣ୍ଣବ ଦିଶୁଥିଲା ସମୁଦ୍ର ପରି ।

ଦିନମାନ ତ ଖାଲି ହେଲିକପ୍‌ଟର ଚକ୍‌କର କାଟୁଥିଲା । ଚାଉଳ,ଚୂଡ଼ା,ପାଉଁରୁଟି ଆହୁରି କ'ଣ କ'ଣ ସବୁ ପକାଉଥିଲେ । ସେ ସତ୍ୟାନାସିଆ କାହିଁକି ପକାଉଥିଲେ କେଜାଣି ମଳିକ ସାହିରେ

ତ ହଣାକଟା ହୋଇଗଲା ସେଇଥି ପାଇଁ । ଡ଼ଙ୍ଗାରେ ବୁହାହୋଇ ସାତ ଆଠଟା ମେଡ଼ିକାଲ ଗଲେ । ତା'ପରେ କିଛିଦିନ ପୋଲିସ୍ ଲୀଳା ଚାଲିଲା । ଏବେ ଟିକେ ଗାଁର ଅବସ୍ଥା ଶାନ୍ତି ପଡ଼ିଛି । ହେଲେ କ'ଣ ହେବ । ଝାଡ଼ା,ବାନ୍ତି,ଜ୍ୱର,ଥଣ୍ଡା,ଘରେ ଘରେ ଲାଗିଛି । ଡାଇରିଆରେ ଆମ ହଳିଆ ଶୁକାର ମାଆ ମରିଗଲା । ମଲା ନାହିଁତ ଆମକୁ ହଇରାଣରେ ପକାଇ ଗଲା । ଆଗରୁତ ଶୁକା କାମ ପାଇଁ ଟଙ୍କା ନେଇଥିଲା ପୁଣି ମାଆ କାମ ପାଇଁ ଟଙ୍କା ମାଗିଲା । ତୋ' ବାପା ନାହିଁ ନାହିଁ କରୁଥିଲେ, ହେଲେ ମଲା କାମଟା ପାଇଁ ମୁଁ ବାଧ୍ୟ କଲାରୁ ଦେଲେ । କିନ୍ତୁ ସେଇଟା ବଡ ପେଞ୍ଚୁଆ, ରୁଆ ପୋତାବେଳେ କମେଇ କରି ବସିଛି । ଏକ ପାଦିଆ ପୁଷ୍କର ଲାଗିଛି ବୋଲି ଭଲ ବୈଷ୍ଣବ ଖୋଜୁଛି, ଛଡ଼ାଇଲେ ଯାଇ କାମକୁ ଆସିବ ।

ମେଟ୍ରିକ୍ ଫଳ ବାହାରିଲା ଯେ ଆମ ଗାଁ ସ୍କୁଲ ସେତେ ଭଲ କଲାନି । ତୋ' ଜଗୁ ଦଦେଇ ପୁଅ ଫାଷ୍ଟକ୍ଲାସ ପାଇଲା-ସେ ଗୋଟିକ ତ ଯାହା ଗାଁ ନାଁ ରଖିଲା ଏଥର । କିଏ ସବୁ କେତେ କଥା କହୁଛନ୍ତି- କି ଗୋଟେ ଯନ୍ତଆଣି ପରୀକ୍ଷା ଫଳ ବାହାର କଲେ ଯେ ସବୁ ଭୁଲଭାଲ କରିଛି । ସନା ବେହେରା ପୁଅ ତ ବିଷ ଖାଇଦେଇଥିଲା ଫଳ କଥା ଶୁଣି । ହେଲେ ପରେ ଆସିଲା ଯେ ସେ ପାଶ୍ କରିଛି । ବଡ଼ିପାଣି ଭିତରେ କମ୍ ଘାଣ୍ଟି ଚକଟି ହୋଇଛି ତା'ପାଇଁ ସନା । କରମ ଟାଣ ଥିଲା ପିଲାଟି ବଞ୍ଚିଗଲା ।

ବାସୁ ନାଆକ ପୁଅ କେଉଁଥିରେ ଗୋଟେ ଚାକିରୀ ପାଇଛି-କ'ଣ ରେଞ୍ଜର କି ଫେଞ୍ଜର ମୋତେ ଠିକ୍ ଭାବେ ଜଣା ନାହିଁ, ହେଲେ ସେଥିପାଇଁ ଘୁଷ୍ କୁଆଡେ ଷାଠିଏ ହଜାର ଟଙ୍କା, ତା ବାପା ବି ଧରାଧରି କରୁଛି । ପାଟ ଜମି ତିନିମାଣ ବିକିପଇସା ଯୋଗାଡ କରୁଛି । କହୁଛି ତିନିମାଣ ଜମିଥାଇ କ'ଣ ଆଲୁଅ କରିବ । ବର୍ଷକରେତ ସିଏ ପାଞ୍ଚମାଣ ଜମିର ପଇସା କମାଇ ପାରିବ । ତୋ'ବାପା ମନ ମନ କରୁଥିଲେ ସେ ଜମି ପାଇଁ, ଆମ ଜମି ପାଖକୁ ଲାଗିଛି ବୋଲି, ହେଲେ ଆମ କାତ ପାଇଲା ନାହିଁ । ସୁରଥ୍ ଗୁରୁଜୀ ରିଟାୟାର୍ଡ ପଇସାରେ ରଖୁଛନ୍ତି ସେ ଜମିକୁ ।

ତଳ ସାହି ଜଗ ସାମଲର ଝିଅ ସାବିତ୍ରୀର କପାଳଟା ବଡ ମନ୍ଦ । ବାହା ହେବାର ବର୍ଷେ ନ ପୁରୁଣୁ ବିଧବା ହୋଇ ଘରେ ରହିଲାଣି । ଶାଶୁଘରେ ତା'ନାଆରେ ଢ଼େର କେଳଙ୍କାରୀ ବାହାରିଲା । ତୁତ ପୁଅ ହେବୁ-ତୋତେ କ'ଣ ଲେଖିବି । ଆସନସୋଲ୍‌ରେ ରହୁଥିଲା ତା' ବର ପାଖରେ, ସେଠି ବି ତା' ଶଶୁର ଚାକିରୀ କରୁଥିଲା ଓ ଦିଅର ପାଠ ପଢୁଥିଲା । ସ୍ୱା'ଗ କୁଆଡେ ତା'ଦିଅର ସହିତ ନସର ପସର ଦେଖି ତା' ବର ବିଷ ଖାଇ ମରିଗଲା । ଦୁନିଆଁ ଝମେଲା ପରେ ତା'ଭାଇ ତାକୁ

ନେଇଆସିଲା । ଏବେ ତ ତା'ପାଇଁ ଗାଁରେ ଗୋଟେ ହଟ ଚମଟ ଲାଗିଛି । ସମସ୍ତେ ସେଇ ଗୋଟିଏ କଥା କହୁଛନ୍ତି ସାବିତ୍ରୀ ଭଳି ଝିଅ ଏମିତି କେମିତି ହେଉଛି? ମୁଁ ଖୋଲିକି ଲେଖି ପାରୁନି ତୁ କେବେ ଆସିଲେ ବଳେ ସବୁକଥା ଜାଣିବୁ ।

ସାବିତ୍ରୀ ବିଧବା ହୋଇଗଲା-ପଢ଼ିଦେଇ ମୋତେ ଆକାଶରୁ ଖସି ପଡ଼ିଲା ଭଳି ଲାଗିଲା । ଆଉଥରେ ସେ ଲେଖାଟିକୁ ଦୋହୋରାଇ ପଢ଼ିଲି, ଯେତେଥର ପଢ଼ିଲେ ବି ବିଶ୍ୱାସ କରି ପାରୁନ ଥିଲି ।

ସାବିତ୍ରୀ ସହ ମୋର ଯେ ଏକ ରୋମାଂଚକର ଅତୀତ ଥିଲା ତାହା ଏବେ ଭାବିଲେ ବି ବିଶ୍ୱାସ ହୁଏନା, ଅଥଚ ଥିଲା । ଯାହାପାଇଁ ଆମ ଦୁଇପରିବାର ଭିତରେ ବହୁଦିନ ଧରି ମନୋମାଳିନ୍ୟ ରହିଥିଲା, ମୁଁ କଲେଜରେ ପଢ଼ିବା ବେଳେ ସାବିତ୍ରୀ ଏକାଦଶ ଶ୍ରେଣୀରେ ପଢୁଥିଲା । "ଲର୍ଡ ଉଇଲିୟମ୍ସ୍ ଡଟର" କବିତାଟି ବୁଝିବା ପାଇଁ ଥରେ ମୋ ପାଖକୁ ଆସିଥିଲା, ସେ କବିତାଟିକୁ କ'ଣ ବୁଝିଲା ଜାଣେନା ମାତ୍ର ତା ' ପରେ ଆମେ ଦୁହେଁ ପରସ୍ପରକୁ ବୁଝିପାରିଥିଲୁ ।

ସାବିତ୍ରୀ ମ୍ୟାଟ୍ରିକ୍ ପାଶ୍ କରି ଗାଁରେ ରହିଲା । ମୋ ହଷ୍ଟେଲକୁ ପ୍ରତି ସପ୍ତାହରେ ଚିଠି ଲେଖୁଥିଲା । ଥରେ ଅଧୈର୍ଯ୍ୟ ହୋଇ ଲେଖିଦେଲା-ଆମେ ଦୁହେଁ ସେହି କବିତାର ପ୍ରେମୀ ଦ୍ୱୟଙ୍କ ପରି ସବୁ ବାଧାବିଘ୍ନ ଡେଇଁ ପଳାଇ ଯାଇପାରନ୍ତେ ନାହିଁ ? ଆମର ଦୁର୍ଭାଗ୍ୟ ଯେ ସେ ଚିଠିଟା କେମିତି ତା' ଭାଇ ହାତରେ ପଡ଼ିଗଲା । ତା'ପରେ ତ ଏକ ରିତିମତ ଯୁଦ୍ଧର ବାତାବରଣ ହୋଇଗଲା । କୌଣସି ସମ୍ଭାବ୍ୟ ବିପଦରୁ ଦୂରେଇ ରହିବା ପାଇଁ ତାକୁ ତା'ର ମାମୁଁ ଘରକୁ ପଠାଇ ଦେଇ ତା' ଭାଇମାନେ ଖୁବ୍ ଜୋରରେ ଲାଗିପଡ଼ି ତା' ପାଇଁ ଯେତେବେଳେ ଗୋଟେ କଲିକତିଆ ବର ଠିକ୍ କଲେ-ସେ ପ୍ରତିରୋଧ କରିଥିଲା । କିନ୍ତୁ ତା' ଭାଇମାନଙ୍କର ନାଲିଆଖି ପାଖରେ ତା' ପ୍ରତିରୋଧ ଶକ୍ତି ଖୋଜି ପାଇଲା ନାହିଁ । ଶେଷରେ ରାଜି ହେଲା ବାଧ୍ୟବାଧକତାରେ । ମଙ୍ଗଳ ପାଗ ଦିନ ମଧ୍ୟ ଜଣେ ବିଶ୍ୱସ୍ତ ପିଲା ହାତରେ ସଂକ୍ଷିପ୍ତ ଚିଠିଟିଏପଠାଇଥିଲା - ପାରିବ ଯଦି ଏବେ ବି ସମୟ ଅଛି । ତମେ ଟିକେ ସାହସ ଯୋଗାଡ଼ କରି ପାରିଲେ ହେଲା । ଯଦି ସାହସ ଅଛି ହଁ ମାର..... ମୁଁ ଏବେ ବି ଚାଲିଯିବି ତମ ସାଙ୍ଗରେ ।

ମୁଁ ଚିଠିଟି ପାଇଲା ପରେ ମୋ ଭିତରେ ସାହସ ଖୋଜି ପାରିଲି ନାହିଁ ସେମିତି ଏକ ପଦକ୍ଷେପ ନେବାପାଇଁ । ପତ୍ରବାହକକୁ କହିଦେଲି ବିବାହଟା ଭାଗ୍ୟର ବରାଦ । ତେବେ ତାଙ୍କ ସୁଖୀ

ଦାମ୍ପତ୍ୟ ପାଇଁ ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ।
ସେବେଠାରୁ ସାବିତ୍ରୀର ସ୍ମୃତି ଯେ ମନକୁ ଆସିନି ନୁହଁ ମାତ୍ର ଆନ୍ଦୋଳିତ କରିବା ପୂର୍ବରୁ ଦୂରେଇ ଯାଇଛି ।

ବୋଉର ଚିଠି ରଖିସାରି ମୋର କାହିଁକି ଇଛା ହେଲା ଘରକୁ ଯାଇ ଥରେ ସାବିତ୍ରୀକୁ ଦେଖନ୍ତି । ତା' ପରଦିନ ଘରେ ଯାଇ ପହଞ୍ଚିଲି । ଗାଁରେ ଯାହା ଶୁଣିଲି ମୋର ବିଶ୍ୱାସ ହେଲାନାହିଁ । ସାବିତ୍ରୀ ଆଉ ସାବିତ୍ରୀ ହୋଇ ରହିନାହିଁ । କିଏ କହିଲା ତା ବଉଳ ଭୂତ ତା' ଉପରେ ସବାର ହୋଇଛି । ଥିବ ଥିବ ଦେହରେ ଲୁଗାପଟା କିଛି ରଖୁନି, ବେଳେବେଳେ ବାଘୁଣୀଙ୍କ ପରି ରାସ୍ତାରେ ଦୌଡୁଛି । ଆଉ କିଏ କିଏ କହୁଥାନ୍ତି କଞ୍ଚା ବୟସର ଏ ଦୁଃଖକୁ ସିଏ ସମ୍ଭାଳି ପାରୁନି । ଭୂତ ଫୁତ କଥା ମିଛ ।

ବୋଉ ମୋତେ ଶୁଣେଇ ଶୁଣେଇ କହିଲା-ମୋ ଚନ୍ଦ୍ରମା ଦେହରେ ଯିଏ କଳଙ୍କ ଦେଇଥିଲେ ତାଙ୍କୁତ ଭଗବାନ ଲୋକହସା କରାଇବେ, ସେ କେତେବେଳେ କାହାକୁ ଧରି କ'ଣ ଗପୁଛି ତା'ର ଠିକଣା ନାହିଁ, ତା' ବାପା ଭାଇ ଆଉ ଲାଜରେ ମୁହଁ ଟେକି ପାରୁନାହାନ୍ତି, ଏଥର ତାଙ୍କର ଗର୍ବ ଭାଙ୍ଗିଛି, ତୁ ଜମା ସେଆଡେ ଯିବୁ ନାହିଁ ।

ମୁଁ ଜାଣୁଥିଲି ବୋଉର ଆକଟର କାରଣ । ତା' ପରଦିନ ମୁଁ ଗାଁ ଦାଣ୍ଡରେ ଯାଉଛି ଦେଖିଲି ବାଘୁଣୀଙ୍କ ପରି ସାବିତ୍ରୀ ଦୌଡୁଛି, ତା' ପଛରେ ତାକୁ ଧରିବା ପାଇଁ ଦୁଇଚାରି ଜଣ ଦୌଡୁଛନ୍ତି । ମୋତେ ସାମ୍ନାରେ ଦେଖି କ'ଣ ଭାବିଲା କେଜାଣି ନିଆଁରେ ପାଣି ପକେଇଲା ପରି ଥପ୍ କିନା ଅଟକି ଗଲା । ଦୁଇଜଣ ସ୍ତ୍ରୀ ଲୋକ ତାକୁ ଧରି ଟାଣି ଟାଣି ନେବା ବେଳେ ମୁଁ ଅନୁମାନ କଲି ସାବିତ୍ରୀର ଆଉ କିଛି ହୋଇନି କେବଳ ହିଷ୍ଟିରିଆ । ମୁଁ ତା' ପଛେ ପଛେ ଯାଇ ତାଙ୍କ ଘର ପାଖରେ ପହଞ୍ଚି ଗଲି ।

ସାବିତ୍ରୀ ସେତେବେଳକୁ ସଂପୂର୍ଣ୍ଣ ସ୍ୱାଭାବିକ ଅବସ୍ଥାକୁ ଆସିସାରିଥିଲା । ମୋତେ ପଚାରିଲା ଘରକୁ କେବେ ଆସିଲ ?

ଗତ କାଲି ।

କ'ଣ ବଡ଼ି ଖବର ଶୁଣି ?

ହଁ,

ମୋ ବିଷୟରେ ତ ସବୁ ଶୁଣି ସାରିଥିବ ?
ମୁଁ କିଛି କହିବା ପୂର୍ବରୁ ସେ କହିଲା- ଶୁଣିକି ବି ଲାଭ କ'ଣ, ମୁଁ କ'ଣ କିଛି ଶୁଣୁଛି କି ?

କ'ଣ ହୋଇଛି ତମର ସାବିତ୍ରୀ ?

କ'ଣ ଆଉ ହେବ- ଗୋଟେ ନପୁଂସକ ସହ ମୋତେ ଛନ୍ଦି ଦେଲେ ଯେ ଗୋଟିଏ ବର୍ଷ ମୋତେ ଜଳାଇ ଜଳାଇ ରଖିଲା । ବଂଚିଥିଲା ବେଳେ ଯାହାତ ଜଳାଇ ଥିଲା-ଥିଲା, ହେଲେ ମଲାପରେ ମତେ କ'ଣ କମ୍ ଜଳାଇଲାଣି । କମ୍ ବଦନାମ ଦେଇକି ଯାଇଛି । ନିଜ ସ୍ତ୍ରୀ ପାଖରେ ତା'ର ଅଣପୁରୁଷା ଅସହାୟତା ହିଁ ତା'ର ଆତ୍ମ ହତ୍ୟାର କାରଣ, ହେଲେ କଥା କେତେ ରୂପ ନେଉଛି ଏଠି । ମୁଁ ଏକଥା କାହାକୁ କହିପାରୁଛି ନା ନିଜେ ସହି ପାରୁଛି, ଏମିତି ବି ହୋଇପାରେ ଏଥିପାଇଁ ଦିନେ ପାଗଳୀ ହୋଇଯିବି ।

ତମେ ଏବେ କ'ଣ ଚାହୁଁଛ ସାବିତ୍ରୀ ?

ଜାଣିକି କ'ଣ କରିପାରିବ ? କଲାବେଳେ ତ ସାହସ ନଥିଲା ଆଉ ଏବେ ଜାଣି କ'ଣ କରିପାରିବ ?

ତେବେ-

ନଈ ବଢ଼ି ଖବର ଶୁଣି ଆସିଥିଲ ପରା, ନଈ ଓ ନାରୀ ଦୁହେଁ ଏକା ପରି । ନଈ ବଢ଼ିଲେ କୂଳ ଖାଏ ମାତ୍ର ନାରୀ ବଢ଼ିଲେ ଥଳ ଖୋଜେ । ଦେଇ ପାରିବ ?

ସାବିତ୍ରୀର ଛାତି ଉପରୁ ଖସି ଯାଇଥିବା ଅସଜଡା ଲୁଗାକୁ ଟେକି ସଜାଡ଼ି ଦେବା ବେଳେ ମୁଁ ଅନୁଭବ କଲି ମୋ ଭିତରେ ପ୍ରଚଣ୍ଡ ଆତ୍ମ ପ୍ରତ୍ୟୟ । ଯାହା ପାଇଁ ମୋର ବହୁତ ପ୍ରତୀକ୍ଷା ଥିଲା ।

ଆମ ଚାରିପଟେ ଜମିଥିବା ଭିଡ଼କୁ ମୁଁ ଲକ୍ଷ୍ୟ କରି ତା'ର ହାତ ମୁଠାକୁ ଜୋର୍‌ରେ ଜାବୁଡ଼ି ଧରିଲି । ମୁଁ ଅନୁଭବ କରୁଥିଲି ଆମେ ଦୁହେଁ ଯେମିତି ପଡ଼ିଯାଇଛୁ ବନ୍ୟାର ଭଉଁରୀ ଭିତରେ ଅଥଚ ଏବେ ଭଉଁରୀ ବି ଲାଗୁଛି ଖୁବ୍ ନିରାପଦ ।

# ବନ୍ଧ୍ୟା ମାଟିର ଶୋକ

ସବୁବେଳେ ଗୋଟିଏ କେମିତିକା, କେମିତିକା ପାପବୋଧ ଭିତରେ ବୁଡ଼ି ରହୁଥିଲେ ଅନୁପମା । ଯଦି ତାଙ୍କର ସ୍ୱାମୀ ଗୋଟେ ମଦ୍ୟପ ହୋଇ ଥାଆନ୍ତେ ଓ ପ୍ରତିଦିନ ରାତର ବିଳମ୍ବିତ ପ୍ରହରରେ ଫେରି ତାଙ୍କ ଉପରେ ଅତ୍ୟାଚାର କରୁଥାନ୍ତେ ତେବେ ହୁଏତ ତାଙ୍କ ମନରେ ଏ ପାପବୋଧ ନଥାନ୍ତା । କାରଣ ଜଣେ ମଦ୍ୟପ, ଭ୍ରଷ୍ଟ ସ୍ୱାମୀକୁ ଅନ୍ତତଃ ଛଳନା କରି ଠକେଇ ପାରିଛନ୍ତି ବୋଲି ସେ ଆନନ୍ଦ ପାଉଥାଆନ୍ତେ । ମାତ୍ର କି ଅଦ୍ଭୁତ ଲୋକ ଇଏ ! ପ୍ରଥମ ରାତ୍ରିରୁ ଆଜିଯାଏ ଦଶବର୍ଷ ହେଲା ଗୋଟିଏ ନିଷ୍ପାପ ପିଲାଭଳି ନିଜକୁ ତାଙ୍କ ପାଖରେ ସମର୍ପଣ କରି ଆସିଛନ୍ତି । କୌଣସି କଥାରେ ପ୍ରତିବାଦ ନାହିଁ । ଥରେ ମଧ ପଚାରି ନାହାଁନ୍ତି ତାଙ୍କର ଅତୀତ । ଯଦି ଥରଟିଏ ବି ପଚାରି ଥାଆନ୍ତେ ତେବେ ସ୍ୱୀକାରୋକ୍ତି ରେ ଅନ୍ତତଃ କିଛିଟା ପାପବୋଧର ବୋଝ କମିଯାଇ ଥାଆନ୍ତା । କିନ୍ତୁ ଗୋଟାଏ ଅପରିପ୍ରକାଶ ଦୁଃଖର ବୋଝକୁ ସେ ଖାଲି ସିସିଫସ୍ ପରି ବୋହି ଚାଲିଛନ୍ତି-ଜାଣିନାହାନ୍ତି ଏହାର ଶେଷ କେଉଁଠି ? ସବୁଦିନ ସେ ଅଫିସ୍ ଯିବାପରେ ନିଃସଂଗ ମୁହୂର୍ତ୍ତରେ ହିଁ ଏ ଭୂତଟା ତାକୁ ପ୍ରବଳ ଆକ୍ରମଣ କରେ ଏବଂ କହେ, 'ଅନୁପମା ! କାହିଁକି ତମେ ଜାଣି ଜାଣି ସାମାନ୍ୟ ଦୈହିକ ସୁଖ ଏବଂ ଏକ ସାମାଜିକ ନିରାପତ୍ତାର ସ୍ୱୀକୃତି ପାଇଁ ଜଣେ ସରଳ ନିଷ୍ପାପ ବ୍ୟକ୍ତିର ସମସ୍ତ ଭବିଷ୍ୟତକୁ ଅନ୍ଧାର ଭିତରକୁ ଠେଲିଦେଉଛ ? ତମେ ସତ୍ୟ ପ୍ରକାଶ କର ଏବଂ ଗ୍ରହଣ କରିନିଅ ଏହାର ପରବର୍ତ୍ତୀ ପରିଣତିକୁ । ତମେ ଏବେ ଯେଉଁ ମାର୍ମିକ ଜ୍ୱଳନ ଭିତରେ ରହୁଛ ଏ ଦୁଃଖ ଠାରୁ ସେ ଦୁଃଖଟା କୌଣସି ଗୁଣରେ ଅଧିକ ନୁହେଁ । ତମର ସାମାନ୍ୟ ସ୍ୱାର୍ଥପାଇଁ ଗୋଟାଏ ପରିବାରର ଭବିଷ୍ୟତକୁ ଗୋଟିଏ ଶୂନ୍ୟ ସ୍ୱପ୍ନର ସ୍ଥିତି ଭିତରକୁ କାହିଁକି ଟାଣି ନେଉଛ ? ମୁଁ ଜାଣେ ତମେ ସିଦ୍ଧାର୍ଥର ସ୍ମୃତିକୁ ସାଇତି ରଖିବା ପାଇଁ ଯଥେଷ୍ଟ ପ୍ରତିରୋଧ କରିଥିଲ- କିନ୍ତୁ ତୁମ ବାପାଙ୍କର ଆଭିଜାତ୍ୟର ଅହମିକା ଓ ସାମାଜିକ ସ୍ଥିତି ପାଖରେ ଗୋଟିଏ ଅନାମଧେୟର ସନ୍ତକକୁ ସ୍ୱାଭିଚାରର ଆଖ୍ୟାଦେଇ ଗ୍ରହଣ କରିନେବା ଅସମ୍ଭବ ଥିଲା । ସେଥିପାଇଁ ତୁମକୁ ପ୍ଲିଜରଟ୍ରିପ୍ ରେ ସୁଦୂର ବାଙ୍ଗାଲୋରକୁ ନେଇ ତୁମର ଅଗୋଚରରେ ତୁମ ଭିତରେ ବଢୁଥିବା ତୁମର ଆବେଗମୟ ମୁହୂର୍ତ୍ତର ସ୍ମାରକୀକୁ ସେମାନେ କେତେ ନିର୍ମମ ଭାବରେ କେବଳ ଆଞ୍ଜୁଳା ଆଞ୍ଜୁଳା ରକ୍ତ ଉପହାର ଦେଲେ । ତୁମେ ଜାଣିଲା ବେଳକୁ ତମ ପାଖରେ କେବଳ ଏକ ଶୂନ୍ୟ ଜରାୟୁର ସାନ୍ତ୍ୱନା ଯେଉଁଟାକୁ ତମେ କେବେ ଚାହିଁ ନଥିଲ । କିନ୍ତୁ କଣ ହେବ ବେଳେ ବେଳେ ଅନ୍ୟମାନଙ୍କର ସ୍ୱାଭିମାନକୁ ସମ୍ମାନ ଦେବାକୁ ହେଲେ ନିଜର ସ୍ୱପ୍ନଦେଖା ରାତିକୁ ଦେବାକୁ

ପଡ଼େ । କିନ୍ତୁ ଜଣଙ୍କର ସମ୍ଭ୍ରାନ୍ତ୍ୟତାକୁ ସମ୍ମାନ ଦେଲ ବୋଲି ଅନ୍ୟ ଜଣଙ୍କର ସରଳତାକୁ ଠକି ଦେବାର କି ଅଧିକାର ତୁମର ଅଛି ? ତମେ ସତ୍ୟପ୍ରକାଶ କରିଦିଅ ତମେ ହୁଏତ ସୁଖୀ ହୋଇପାର ।'

ନା-ମୁଁ ଗୋଟେ ଶୂନ୍ୟ କୋଳର ଦୁଃଖ ସହି ପାରିବି-ବନ୍ଧ୍ୟାମାଟିର ଶୋକକୁ ହୃଦୟ ଭିତରେ ଧୀମିତ ରଖିପାରିବି କିନ୍ତୁ ପାରିବିନି ତାଙ୍କ ପାଖରେ ମୋର ଅତୀତର ନଗ୍ନ ପ୍ରତିବିମ୍ବକୁ ଉପସ୍ଥାପିତ କରି । ମୋର ଅନ୍ୟ କାହାର ସ୍ନେହ ପ୍ରତି ଆକାଂକ୍ଷା ନାହିଁ ବା ଘୃଣାପ୍ରତି ବିତୃଷ୍ଣା ନାହିଁ । କିନ୍ତୁ ତାଙ୍କର ସାମାନ୍ୟତମ ଉପେକ୍ଷାହିଁ ମୋପାଇଁ ତୁଷାର ଝଡ଼ ହୋଇଯିବ । ଅନ୍ତତଃ ତାଙ୍କ ପାଖରେ ମୋର ଯେତିକି ଟିକିଏ ସମ୍ମାନ ଅଛି ସେତିକି ରହୁ-ସେତିକିରେ ମୁଁ ଅବଶିଷ୍ଟ ଦୁଃଖକୁ ଓଠ ଚିପି ସହି ନେବି ।

(କିନ୍ତୁ ତୁମେ ତ କେବଳ ଜଣଙ୍କର ପରିବାର ପାଇଁ ଡ଼ାକି ଆଣୁନା ଦୁଃଖକୁ ବରଂ ଦୁଇଟି ପରିବାର ପାଇଁ ତୁମେ ଦେଉଛ ନିର୍ବାପିତ ଦୀପ ଶିଖାର ଅନ୍ଧାର । କେବେ ଚିନ୍ତା କରୁଛ ସିଦ୍ଧାର୍ଥ ଏଇନେ କଣ କରୁଛି ? ତୁମର ସଂପର୍କକୁ ସାଇତିବାକୁ ଯାଇ ଗୋଟିଏ ଧ୍ୱଂସ୍ତ ଉପତ୍ୟକାରେ ସ୍ମୃତି ପାଉଁଶର ସ୍ତୁପ ଉପରେ ଛିଡ଼ାହୋଇ ସେ ବଂଶୀ ବାଦନ କରୁଛି-ଉପେକ୍ଷା କରି ସମସ୍ତ ଅପ୍ରାପ୍ତିର ଅବଶୋଷକୁ । ତାକୁ ତୁମେ କେବେ ବୁଝିବାକୁ ଚେଷ୍ଟା କରିଛ ? କେମିତି ବଂଚିଛି ସେ ଦୁଃଖକୁ ପିଇ ପିଇ ଲୁହର କଙ୍କାଳ ହୋଇ । କଣ ଲାଭ ପାଇଲ ଦୁଇଟି ପରିବାରର ସ୍ୱପ୍ନର ଜତୁଗୃହରେ ଗୋପନରେ ଅଗ୍ନି ସଂଯୋଗ କରି ।ତମେ କଣ ନିଜକୁ ଏଥିପାଇଁ କ୍ଷମାଦେଇ ପାରିବ ?

ଥରେ ଦେଖି ଆସ ସିଦ୍ଧାର୍ଥକୁ ସେ ବି ତୁମ ସହରରେ ଅଛି । କି ପାପ ସେ କରିଥିଲା, କହ ? ତୁମ ଆଭିଜାତ୍ୟର ଅହମିକା ବୋଧପାଇଁ ଜଳିଜଳି ନିଃଶେଷ ହୋଇଯିବାକୁ ବସିଛି । ପଥରର ଦୁଇଟି ଆଖିତଳେ ଲୁହ ଛଳଛଳ ମେଞ୍ଚାଏ ଆବେଗ, ଓଠରେ ନିର୍ଲିପ୍ତ ଉଦାସ ହସ ଟିଏ ଓ ବଂଶୀ ଖଣ୍ଡିଏରେ ସେ ତା'ର ଜୀବନ ବିତାଇ ଦେବାକୁ ବସିଛି । ସେ କଣ ଗୋଟିଏ ଏମିତି ଜୀବନ ତୁମକୁ ମାଗିଥିଲା ? କାହିଁକି ତୁମେ ତା'ର ନିରୀହତାର ସୁଯୋଗ ନେଇ ତାର ଦାରିଦ୍ର୍ୟର ଉପହାସ କରି ତା' ହାତରେ ଧରାଇଦେଲ ତୁମ ଭଲପାଇବାର ଭଙ୍ଗା କଣ୍ଢେଇଟିକୁ ? ସେ ଶିଳ୍ପୀ ଥିଲା-ସେ ତ ତୁମକୁ ଡ଼ାକି ନଥିଲା ତାର କଳାର ସାମ୍ରାଜ୍ୟକୁ । ତୁମେ ଅଯାଚିତ ଭାବରେ ଯାଇ ତାକୁ ପ୍ରେମ ନିବେଦନ କରିଥିଲ । ସେ ଥିଲା ପୁରୁଷ, ତଥାପି ସମସ୍ତ ପୌରୁଷର ସଂଯମତାର ଊର୍ଦ୍ଧ୍ୱରେ ସେ ଚାହିଁଥିଲା ମାନସିକ ସାହଚର୍ଯ୍ୟ । କିନ୍ତୁ ସେଦିନ ଜହ୍ନରାତିର ମାୟାରେ/କାଳିଜହ୍ନ ଙ୍କା ବେଳାଭୂମିରେ ତୁମେ ତାକୁ ମାଗିଥିଲ ଦେହ । କୁହ ତୁମେ କ'ଣ ଏକଥାକୁ ଅସ୍ୱୀକାର କରି ପାରିବ ? ତା'ର ଭବିଷ୍ୟତ ତୁମ ଜରାୟୁରେ ଡେଣା ମେଲିବାପୁର୍ବରୁ ତୁମେ ତା'ର ପକ୍ଷକାଟି ତାକୁ ରକ୍ତାକ୍ତ କରିଦେଲ । ତା'ପରେ

ତାର ମନରୁ ସବୁ ସ୍ୱପ୍ନକୁ ଚୋରି କରି ତମେ ଚାଲି ଆସିଲ, ଆଉ କାହାର ସ୍ୱପ୍ନ ପାଇଁ ରାତି ହେବାକୁ । କିନ୍ତୁ ତୁମେଥରେ ଚିନ୍ତାକର ତ ତୁମେ ନା ସ୍ୱପ୍ନ ହୋଇ ପାରିଲ ନା କାହାର ସ୍ୱପ୍ନ ପାଇଁ ରାତି ହୋଇପାରିଲ ? ବରଂ ଏଇନେ ତୁମେ ଅନୁପମଙ୍କ ପାଖରେ ତୁମର ଅକ୍ଷମତା ମାନି ନେଇଗଲେ ସେ କିଛି ବିକଳ୍ପ ପନ୍ଥା କରି ପାରନ୍ତେ )

ନା-ନା, ମୁଁ ପାରିବି ନାହିଁ । ମୋର ସମସ୍ତ ଅକ୍ଷମତା ସତ୍ତ୍ୱେ ମଧ୍ୟ ମୁଁ ତାଙ୍କ ପାଖରେ ମୋର ବିକଳାଙ୍କ ଅତୀତକୁ ପ୍ରକାଶ କରି ତାଙ୍କୁ ଆଉ କାହାର ହେବାକୁ ଦେଇ ପାରିବି ନାହିଁ । ମୁଁ ଜଳୁଛି- କିନ୍ତୁ ତାଙ୍କୁ ଜଳିବାକୁ ନଦେଇ ମୁଁ ନିଃଶେଷ କରିଦେବି ।

ବାହାରେ ସ୍କୁଟରର ହର୍ଣ୍ଣ ଶୁଭିଲା । ଅନୁପମ ବୋଧହୁଏ ଆସିଗଲେ । ଦୁଆର ମୁହଁ ପର୍ଯ୍ୟନ୍ତ ଯାଇ ତାଙ୍କୁ ପାଛୋଟି ଆଣିବେକି ନାହିଁ ଭାବୁ ଭାବୁ ଘର ଭିତରକୁ ପଶି ଆସିଲେ ସେ ।

କଣ ହୋଇଛି-ଏମିତି ବିଷର୍ଣ୍ଣ ହୋଇ ବସିଛ ଯେ ? ମୁଁ ଜାଣୁଛି ମୋର ଅଫିସ ଯିବା ସମୟତକ ତୁମେ ଖୁବ୍ ବୋର୍ ହେଉଥିବ । ଚାଲ ଆଜି ସଂଧ୍ୟାରେ ଟିକେ ସମୁଦ୍ରକୂଳରେ ବୁଲି ଆସିବା !

ନା-ମୋର ଦେହ ଭଲ ଲାଗୁନି ।

ମୁଁ ଜାଣେ ତୁମେ ଏମିତି କିଛିନା କିଛି ଗୋଟିଏ ବାହାନା କରିବ । କିନ୍ତୁ ଯାହା ହେଲେ ବି ତୁମକୁ ଆଜି ମୋ ସହିତ ଯିବାକୁ ପଡ଼ିବ । ପ୍ଲିଜ୍-ଶାଢ଼ୀ ପାଲଟି ନିଅ, ଅନୁପମା ଆଉ ପ୍ରତିରୋଧ କଲେନି । ଭିତରକୁ ଚାଲିଗଲେ ଶାଢ଼ୀ ପାଲଟିବା ପାଇଁ ।

ଏପଟେ ଘରୁ ଅନୁପମ୍ ଡାକିଲେ-ତମେ ଶୁଣୁଛ ବୋଉ ଆଜି ଗୋଟିଏ ଚିଠି ଦେଇଛି । କ'ଣ ଲେଖିଛି ଜାଣିଛ, ତମେ ଆସ ସମୁଦ୍ର କୂଳରେ କହିବି ।

ସମୁଦ୍ରକୂଳରେ ପହଞ୍ଚିଲା ପରେ ଅନୁପମା ପଚାରିଲେ, " ବୋଉ କ'ଣ ଲେଖିଛନ୍ତି- ?"

ବୋଉ ଲେଖିଛି, 'ତୁମେ ସହରରେ ରହୁଛ । ଏଇଟା ଆଜିକାଲି କେଉଁ ବଡ଼ କଥା ଯେ, ଡାକ୍ତର ଦେଖାଉନ କାହିଁକି ? ସେ ଆମ ଜାତକ ଦେଖାଇଥିଲା । ଏଇନେ ଆମର ଗ୍ରହଦୋଷ କଟିଗଲାଣି

ଭଲ ସମୟ ଆସିଛି, ସନ୍ତାନ ପ୍ରାପ୍ତି ଯୋଗ ଅଛି, ଶିବପୂଜା ପାଇଁ ଲେଖିଛି । ତୁମେ ଗୋଟିଏ ଶିବ ଫଟୋ ରଖି ପ୍ରତିଦିନ ପୂଜା କରିବ । କଣ ବୁଝୁଛ ନା ନାହିଁ ? ତୁମେ ଏମିତି ଅନ୍ୟମନସ୍କ ରହୁଛ କାହିଁକି ?'

'ତୁମ ମାନଙ୍କ ସରଳତାକୁ ମୁଁ କେମିତି ବୁଝାଇବି ଅନୁପମ ? ତୁମେ ମୋ କଥାକୁ କଣ ବିଶ୍ୱାସ କରିବି ଅନୁପମ ? କୌଣସି ଗ୍ରହଦୋଷ ନୁହେଁ-ମୋର ପ୍ରଥମ ଗର୍ଭପାତ ସମୟରେ ବିଷାକ୍ତ ଔଷଧ ପ୍ରତିକ୍ରିୟାରେ ମୋ ଜରାୟୁରେ ଆଉଥରେ ଭ୍ରୁଣସଂଚାର ସଂଭବ ନୁହେଁ !'

ଏ-କଣ ଏତେ ଭାବୁଛ କୁହତ ? କଣ ଖାଲି ଚିନ୍ତାକଲେ ହୋଇଯିବ ? ଈଶ୍ୱରତ ଆମକୁ ଦେଇ ନାହାନ୍ତି ।'

(ଅନୁପମା ତୁମେ ଏବେ ସତ୍ୟକୁ ପ୍ରକାଶ କରିଦିଅ । ତୁମେ ଯେଉଁ ଦୁଃଖର ବୋଝକୁ ବୋହି ଅନ୍ୟକୁ ପ୍ରତାରଣା କରି ଚାଲିଛ ତାକୁ ସମାପ୍ତ କରିଦିଅ । ଜଣକୁ ପିତୃତ୍ୱ ଦେଇପାରୁ ନଥିବା ଗୋଟିଏ ନାରୀର କି ନୈତିକ ଅଧିକାର ଅଛି ଜଣଙ୍କର ଭବିଷ୍ୟତକୁ ଅନିଶ୍ଚିତତା ଆଡକୁ ଠେଲିଦେଇ ନିଜ ସହ ତାକୁ ସେହି ଦୁଃଖରେ ପକାଇବା ।)

ଆରେ କ'ଣ ଏତେ ଭାବୁଛ ? କଣ ସମୁଦ୍ରକୁ ଦେଖି ଏକବାରେ ବିମୁଗ୍ଧ !!

ଅନୁପମ ! ତୁମକୁ ଗୋଟିଏ କଥା କହିବି ରଖିବ ?

କ'ଣ କୁହ-

ତୁମେ ଆଉ ଜଣକୁ ବିବାହ କର-ମୁଁ ତୁମକୁ ପିତୃତ୍ୱ ଦେଇପାରିବି ନାହିଁ ।

ଛି! ପାଗଳିଙ୍କପରି ଏ କ'ଣ କହୁଛ । ତୁମେ ଏମିତି ବ୍ୟସ୍ତ କାହିଁକି ? ଭାଗ୍ୟରେ ନଥିଲେ ଆମେ କଣ କରିବା ?

(କେମିତି କହିବି ସ୍ୱାଙ୍କୁ.....ନିଜ ଭିତରେ ଶୁଖି ଯାଇଥିବା ନଦୀର ଦୁଃଖକୁ ଯେ ଯେତେ

ବର୍ଷା ହେଲେ ମଧ୍ୟ ସେ ପୂର୍ଣ୍ଣଗର୍ଭା ହୋଇ ପାରେନା ।)

ଚାଲ ସେପଟେ ଯେଉଁଠି ଲୁଣ ମରା ଯାଉଛି ଦେଖିବା ।

ହଉ ଚାଲ ।

ଦେଖ ଏ ଜମି ଉପରେ କେମିତି ସବୁ ଲୁଣର ଆସ୍ତରଣ । ସମୁଦ୍ର ପାଣିକୁ ଏଠାରେ ଅଟକାଇ ରଖାଯାଏ, ଖରାରେ ପାଣି ସବୁ ବାଷ୍ପ ହୋଇ ଯିବାପରେ ଲୁଣ ମାଟି ଉପରେ ରହିଯାଏ ।

ଏ ଜମିରେ କ'ଣ ଅନ୍ୟ ଫସଲ କରାଯାଏନା ?

ଆରେ ବୋକା ନା କଣ-ଲୁଣିଆ ପାଣିରେ ଏ ମାଟିର ଉର୍ବରତା ଆଉ ଆସିଲା କେଉଁଠୁ ? ଫସଲ ଫଳିବ । ଏ ଜମି ସବୁ କେବଳ ଲୁଣ ଚାଷ ପାଇଁ ଫସଲ ପାଇଁ ନୁହେଁ ।

ଅନୁପମ ତୁମକୁ ଗୋଟାଏ କଥା କହିବି ବୋଲି ଅନେକଦିନ ହେଲାଣି ଭାବିଛି କହିପାରିନି ।
କ'ଣ କୁହ ।

ମୁଁ ଏହି ଲୁଣ ମରା ଜମି ଅନୁପମ-କେବେ ତୁମର ସ୍ୱପ୍ନର ଫସଲ ଫଳାଇ ପାରିବିନି ।

ଏ ତମେ କ'ଣ କହୁଛ ?

ହଁ ଅନୁପମ ମୁଁ ସତକଥା କହୁଛି । ମୋର ସମସ୍ତ ଉର୍ବରତା ନଷ୍ଟ ହୋଇ ଯାଇଛି-ମୁଁ ତୁମକୁ କେବେ ପିତୃତ୍ୱ ଦେଇ ପାରିବିନି । ମୁଁ କେବଳ ଗୋଟାଏ ବନ୍ଧ୍ୟାମାଟି -ମୋର ସୃଷ୍ଟିର କ୍ଷମତାହିଁ ସେଦିନ ନଷ୍ଟ ହୋଇ ଯାଇଛି ଯେଉଁଦିନ ଗୋଟାଏ ଆଭିଜାତ୍ୟର ଅହମିକାରେ ମୋର ସୁନାର ଫସଲ କିଆରୀରେ କ୍ଷୀର ଢୋକୁ ଥିବା ଧାନ କେଣ୍ଡାକୁ କାଟି ଫିଙ୍ଗି ଦିଆଗଲା ।

ଏ ତମେ କ'ଣ ସବୁ କହି ଯାଉଛ ?

ମୁଁ ଆଜି ତୁମ ପାଖରେ ସତ୍ୟ ପ୍ରକାଶ କରୁଛି । ଏହାପରେ ତୁମେ ମୋତେ ମୁକ୍ତି କିମ୍ବା ମୃତ୍ୟୁ ଦିଅ ମୁଁ ସବୁକୁ ଗ୍ରହଣ କରି ନେବାକୁ ପ୍ରସ୍ତୁତ୍-କିନ୍ତୁ ପତ୍ନୀର ଅଭିନୟ କରି ତୁମକୁ ପିତୃତ୍ୱ ଦେବାର ଛଳନା ମୁଁ ଆଉ କରି ପାରିବିନି..........

ମାଡ଼ି ଆସୁଥିବା ସମୁଦ୍ରର ଜୁଆର ଛାଡ଼ି ଛାଡ଼ି ଯାଉଥିଲା ବେଳାଭୂମିର ପାଦଚିହ୍ନ ସବୁ ଧୋଇ ଧୋଇ । ସବୁ ଶୁଣିସାରି ଅନୁପମ କହିଲେ-ସମୁଦ୍ରକୁ ଦେଖୁଛ ଅନୁପମା ! ସମୁଦ୍ରକୁ ଦେଖ-ସମୁଦ୍ର...........

# ଦୌଡ଼ ପ୍ରତିଯୋଗିତା

ପୁଅର ଭବିଷ୍ୟତ ବିଷୟରେ ମୁଁ ଥିଲି ଔଦାସ୍ୟ । ସେମିତି ଖାସ୍ ଚିନ୍ତା କରୁନଥାଏ । ଯିଏ ଯାହା ହେବାର ଥିବ ହେବ ଏହା ବିଧି ନିର୍ଘଣ୍ଟ । ଆମେ ଯେତେ ବାଡ଼େଇ କଚାଡ଼ି ହେଲେ ମଧ୍ୟ ତାକୁ ପରିବର୍ତ୍ତନ କରି ପାରିବାନାହିଁ । ବରଂ ପୁଅର ଭବିଷ୍ୟତ ନେଇ ଅତ୍ୟଧିକ ମହତ୍ତ୍ୱାକାଂକ୍ଷା ପୋଷଣ କରିଥିଲେ ସେ ଯଦି କୁଆଡୁ କିଛି ହୋଇ ନ ପାରିଲା ତେବେ ଅବଶୋଷ କରିବା ସାର ହେବ । ମାତ୍ର ମୋ ସ୍ତ୍ରୀ ପୁଷ୍ପାଙ୍କର ଯୁକ୍ତି ଥିଲା ଅଲଗା । ସେ ଏଇନା କାଦୁଅ ପିଣ୍ଡୁଳାଟାଏ ଆମେ ତାକୁ ଯେମିତି ଗଢ଼ିବା ସେ ସେମିତି ଗଢ଼ି ହେବ । ଯେଉଁ ବାଟ ଦେଖାଇବା ସେ ସେହି ବାଟରେ ଯିବ । ତମେ ସେ ମରହଛି ବାପାଙ୍କ ଭଳି ଭାଗ୍ୟ ଉପରେ ସବୁ ଛାଡ଼ି ଦେଲେ ଭାଗ୍ୟ ବି ପୁଅକୁ ବାଟ ଭାଙ୍ଗି ଚାଲି ଯିବ ।

ମୁଁ କହେ - ହେଉ ବାବା ହେଉ । ତମେ ଯେମିତି ଚାହୁଁଛ ପୁଅକୁ ସେମିତି ଗଢ଼ । ମୋର ସହଯୋଗ ଅଛି ତମ ପଛରେ ।

ମୁଁ କ'ଣ ଗଢ଼ିବି ? ଆମେ ଉଭୟେ ଗଢ଼ିବା କୁହ । ମୋ ଠାରୁ ତ ତମେ ଅଧିକ ତତ୍ପର ହେବା କଥା । କାରଣ ପ୍ରତ୍ୟେକ ବାପା ଚାହେଁ ସେ ଯେଉଁ କାର୍ଯ୍ୟ କରିବାରେ ଅସଫଳ ହୋଇଛି ତା' ପୁଅ ସେଥିରେ ସଫଳ ହେଉ । ତମେ କହୁନ ଥିଲକି ତମର ଭଲ ଡାକ୍ତରଟିଏ ହେବାର ଇଚ୍ଛା ଥିଲା । ମାତ୍ର ତମେ ମେଡିକାଲ ଏନ୍‌ଟ୍ରାନ୍‌ସ ପାଇଲ ନାହିଁ । ତା'ପରେ ତମେ ଚାହିଁଥିଲ ଆଇ.ଏ.ଏସ୍.ହେବା ପାଇଁ ମାତ୍ର ଦୁଇ ଦୁଇ ଥର ମେନ୍ ପରୀକ୍ଷାରୁ ଚିତ୍‌ପଟାଙ୍ଗ ମାରି ଶେଷଥରରେ ପ୍ରିଲିମନାରୀରୁ ବି କଟିଯାଇଥିଲା । ତେଣୁ ମୋ ଠାରୁ ତ ତମ ଭିତରେ ଅଧିକ ଚ୍ୟାଲେଞ୍ଜ ଆସିବା କଥା ଅନ୍ତତଃ ତମେ ଯେଉଁ ଥିରେ ବିଫଳ ହୋଇଛ ପୁଅକୁ ସେଥିରେ ସଫଳ କରିବାକୁ ।

ମୁଁ ଜାଣୁଥିଲି ମୋତେ ଏ ସବୁ କହିବା ପଛରେ ପୁଷ୍ପାଙ୍କ ର ଅସଲ ମତଲବ ଅଛି ମୁଁ ହାରି ଯାଇଥିବା ଜିଦ୍ ନେଇ ପୁଅ ପଛରେ ଲାଗିଯାଏ । ମାତ୍ର ତା'ଙ୍କ କଥାର ପ୍ରଭାବ ମୋ ଉପରେ ବିଶେଷ ପଡୁନଥାଏ । କାରଣ ମୁଁ ଜାଣୁଥିଲି ଗୋଟିଏ ଉଚ୍ଚାକାଂକ୍ଷାର ବିଫଳତା ଜୀବନକୁ କେତେ ଦୁର୍ବିସହ କରି

ପଢାଏ । ଅନ୍ତତଃ ବାପ ହିସାବରେ ମୋର ମଧ୍ଧ ଧ୍ୟାନ ଦେବା ଉଚିତ୍ ଯେ ପୁଅ ଉପରେ ସେମିତି ଏକ ମାନସିକ ଚାପ ନ ପଡୁ । ମୋ ଠାରୁ ସେମିତି କୌଣସି ଉତ୍ସାହଜନକ ସହଯୋଗ ନ ପାଇ ମଧ୍ୟ ସେ ଲାଗି ପଡ଼ିଲେ ପୁଅ ପଛରେ ତାଂକ ଚିନ୍ତା ଓ ଚେତନାର ସଫଳ ବ୍ୟକ୍ତିତ୍ୱ ହିସାବରେ ପୁଅକୁ ଗଢ଼ି ତୋଳିବା ପାଇଁ ।

ପୁଅ ଡାଡି ମମି ଡାକି ଶିଖିବା ବେଳକୁ ତାକୁ ଆମ ପରିପାର୍ଶ୍ୱର ଜଗତର ବିଭିନ୍ନ ବସ୍ତୁ ଓ ଜୀବଙ୍କର ଇଂରାଜୀ ନାମ - ଯଥା: କାଓ,ଡଗ୍,ହର୍ସ,ଲାୟନ୍, ପିଗ୍,ର୍ୟାଟ, ଫ୍ରିଜ୍, ଟେବୁଲ୍, ଓଭେନ୍, ଟେପ୍, ଟି.ଭି .ରିମୋଟ୍ ଇତ୍ୟାଦି ଶିଖାଇ ଦେଇଥିଲେ । ତାକୁ ତିନି ବର୍ଷ ହେବା ଆଗରୁ ଆଲଫାବେଟ୍ ଶିଖିବା ସହିତ ଏ ଫର୍ ଆପଲ୍‌ରୁ ଜେଡ୍ ଫର୍ ଜେବ୍ରା ଯାଏଁ ଏବଂ ଟ୍ୱିଙ୍କଲ ଟ୍ୱିଙ୍କଲ ଲିଟିଲ ଷ୍ଟାର, ଗଡ ବ୍ଲେସ୍ ମମି ଇତ୍ୟାଦି ରାଇମ୍ ଶିଖାଇ ସାରିଥିଲେ । ତା ପାଇଁ ବିଭିନ୍ନ ପ୍ରକାରର ଷ୍ଟଡି କିଟସ୍ କିଣି ଆଣି ତାକୁ କାର, ଜିପ୍, ବ୍ରିଜ୍, ହାଉସ୍, ତିଆରି କରି ଶିଖାଇବା ସହ ଭାରତର ବିଭିନ୍ନ ରାଜ୍ୟକୁ ଯୋଡି ଭାରତ ତିଆରି କରି ବା ଓଡ଼ିଶାର ବିଭିନ୍ନ ଜିଲ୍ଲା ଇତ୍ୟାଦି ଚିହ୍ନେଇବା ଶିଖେଇ ଥିଲେ । ପୁଅବି ଗୋଟେ ଚାବି ଦିଆ କଣ୍ଢେଇ ପରି ସେ ଯେତିକି ଶିଖାଉ ଥିଲେ ସେତିକି କହି ଦେଉଥିଲା, ସେ ମନେ ମନେ ଖୁସି ହେଉଥିଲେ, ଯାହା ହେଉ ପୁଅର ଆଇକ୍ୟୁ ଯଥେଷ୍ଟ ଅଛି ।

ପାଠ ପଢ଼ା ସହ ପୁଅର ଖେଳ ପ୍ରତି ଆଗ୍ରହ ବଢ଼ାଇବାରେ ମଧ୍ୟ ସେ ଧ୍ୟାନ ଦେଉଥିଲେ । ସେ ଠୁକ୍ ଠୁକ୍ ହୋଇ ଚାଲି ଶିଖିବା ବେଳକୁ ତା' ପାଇଁ ପ୍ଲାଷ୍ଟିକ୍‌ର କ୍ରିକେଟ୍ ବ୍ୟାଟ୍ ଓ କ୍ରିକେଟ ବଲ୍ କିଣି ଆଣି ଅଗଣାରେ ରିତିମତ ବୋଲିଂ କରି ତା' ସହ କ୍ରିକେଟ୍ ଖେଳୁଥିଲେ । ଟି.ଭି.ରେ କ୍ରିକେଟ୍ ମ୍ୟାଚ୍ ଚାଲିଲା ବେଳେ ତାକୁ ବସାଇ ଦେଖାଉଥିଲେ ଦେଖ୍ ସଚିନ୍ କିପରି ଛକା ମାରୁଛି ।

ପୁଅ ପ୍ରତି ତାଙ୍କର ଅତି ମାତ୍ରାରେ ଧ୍ୟାନ ଦେଖି ମୁଁ ବେଳେ ବେଳେ ରାଗିଯାଇ କହେ- ତମେ ଆଗେ ତମର ଲକ୍ଷ୍ୟ ସ୍ଥିର କରି ନିଅ ପୁଅକୁ କ'ଣ କରିବ । ତା'ପରେ ସେହି ଲକ୍ଷ୍ୟ ଅନୁଯାୟୀ ପୁଅକୁ ତିଆରି କରିବ । ବହୁଧା ଲକ୍ଷ୍ୟନେଇ ଛୁଆଟିକୁ ଗଢ଼ିଲେ ଶେଷରେ କିଛି ହୋଇ ପାରିବ ନାହିଁ ।

ପୁଷ୍ପା ସଙ୍ଗେ ସଙ୍ଗେ ଯୁକ୍ତି କରି କହନ୍ତି - ଆଜି କାଲି ଯୁଗରେ କେବଳ କୌଣସି ଗୋଟିକରେ ସବଳ ହେଲେ ହେବ ନାହିଁ ଯୋତା ସିଲେଇ ଠାରୁ ଚଣ୍ଡିପାଠ ଯାଏ ସବୁ ବିଦ୍ୟାକୁ ଶିଖିବାକୁ ପଡିବ । ଗୋବର୍ଦ୍ଧନ ବାବୁଙ୍କ ପୁଅ ଭଲ ପାଠ ପଢୁ ନଥିଲା କି ? କ'ଣ ହେଲା ? ସ୍ମାର୍ଟ ନ ଥିଲା-ଇଣ୍ଟରନ୍ୟାସନାଲ

ଆଫେୟାରସ୍ ଉପରେ ଅନାୟାସରେ ସବୁ ପ୍ରଶ୍ନର ଉତ୍ତର ଦେଇ ପାରୁଥିବା ପିଲା ଇଣ୍ଡିଆନ୍ ସିନେମା କଥା ପଚାରିଲା ବେଳକୁ ଢିଲେ । ମୁଁ ଚାହୁଁନି ମୋ ପୁଅ ସେମିତି ହେଉ । ସେ ମାଷ୍ଟର ଅଫ୍ ଅଲ ଟ୍ରେଡ୍ ହେବା କଥା ।

ଦେଖାଯାଉ କ'ଣ ହେଉଛି ତମର ପୁଅ ।

ସେ ରାଗିଯାଇ କହନ୍ତି ତମେ ବିଫଳ ମନସ୍କ ମାନସିକତା ଠାରୁ କେବେ ଉର୍ଦ୍ଧ୍ୱକୁ ଯାଇ ପାରିବ ନାହିଁ ।

ପୁଅକୁ ତିନିବର୍ଷ ପୁରିଲା ବେଳକୁ ସେ ବ୍ୟସ୍ତ ହୋଇ ପଡିଲେ ତାକୁ ସ୍କୁଲରେ ଆଡମିଶନ କରାଇ ଦେବା ପାଇଁ । ମୁଁ କହିଲି ଦେଖ ଏବେ ସ୍କୁଲ ମାନଙ୍କରେ ଯେତେ ବହି ପଢ଼ାଉଛନ୍ତି ତା'ର କୋମଳ ମସ୍ତିଷ୍କ ଭିତରେ ଏବେ ସବୁ କଥା ପାଇଁ ସ୍ଥାନ ହୋଇନି । ତାକୁ ପାଞ୍ଚ ବର୍ଷ ହୋଇ ଯାଉ ବରଂ ବୟସ କମାଇ ନାଁ ଲେଖାଇ ଦେବା ।

ତମେ ବୋଧେ ଏକୁଟିଆ ଶିକ୍ଷା ବିଶାରଦ । ଯିଏ ସବୁ ଏ କରିକୁଲମ୍ କଲେ ସମସ୍ତେ ବୋଧେ ପାଗଳ କିମ୍ବା ଗଂଜେଇ ଖାଇ କରିଛନ୍ତି । ପୁଅ ବୟସର ପିଲାଙ୍କ ପାଇଁତ ଏ ସବୁ ହୋଇଛି ।

ମୁଁ ମାନୁଛି ହେଲେ, ତମକୁ ସେ ଦିନ ସେ ଆର୍ଟି କିଲ୍‌ଟା ଦେଖାଉ ନଥିଲି ? ଯେଉଁଠି ଲେଖା ଯାଇଥିଲା କୋମଳମତି ଶିଶୁ ମାନଂକ ଉପରେ ସ୍କୁଲ କରିକୁଲମ୍‌ର ଅତ୍ୟଧିକ ଚାପ ଯୋଗୁଁ ସେମାନେ ମାନସିକ ଚାପର ସମ୍ମୁଖୀନ ହୋଇ କିପରି ବିଚିତ୍ର ବ୍ୟବହାର ଦେଖାଉ ଅଛନ୍ତି । ଏ ପରିକି ସର୍ଭେ ରିପୋର୍ଟରୁ ଜଣା ଯାଇଛି ଯେ ସେମାନେ ଉପସ୍ଥିତ ବୁଦ୍ଧି ଶୁନ୍ୟତାର ଶିକାର ହେଉଛନ୍ତି ଯଥା ହଠାତ୍ ଟ୍ରାଫିକ୍ ସେଣ୍ଟରରେ ବାଆଁକି ଡ଼ାହାଣକୁ ଯିବା ନିର୍ଣ୍ଣୟ କରିବା, ହଠାତ୍ ସାମ୍ନା ପଟୁ ଗାଡ଼ି ଚାଲି ଆସିଲେ କ'ଣ କରିବା ଇତ୍ୟାଦି ଇତ୍ୟାଦି ।

ହଁଃ-ସେମାନେ କେତେଟା ଷ୍ଟ୍ରେ କେସେସ୍‌ର ଉଦାହରଣ ନେଇଥିବେ ଓ ତାକୁ ସେମାନେ ଜେନେରାଲାଇଜ୍ କରି ମନ୍ତବ୍ୟ ଦେଇ ଦେଉଛନ୍ତି । ଦୁନିଆଁରେ ସବୁ ବାପା ମାଆ କ'ଣ ମୁର୍ଖ ସେମାନେ କେବଳ ପଣ୍ଡିତ ?

ମୁଁ ତୁମ ସହ ଯୁକ୍ତି କରିବା ଉଦ୍ଦେଶ୍ୟରେ ଏକଥା କହୁ ନଥିଲି, କେବଳ ସୂଚେଇ ଦେବାକୁ ଚାହୁଁଥିଲି । ପୁଅର ପାଠ ପଢ଼ା ଓ ଭବିଷ୍ୟତ ସଂପର୍କରେ ତମର ନିଷ୍ପତ୍ତିକୁ ମୁଁ ସମ୍ମାନ ଦେବି ।

ପୁଅର ନାଁ ଲେଖା ହେଲା । ସେ ସ୍କୁଲ ଗଲା । ସ୍କୁଲ ଯାଉ ନଥିଲା ତ ଏକ ରିତିମତ ପ୍ରାତଃ ପର୍ବଆମ ଘରେ ଲାଗୁଥିଲା । ସ୍କୁଲ ବସ୍ ପହଞ୍ଚିବ ଠିକ୍ ଛଟାରେ । ତେଣୁ ପାଞ୍ଚଟା ରାତିରୁ ଉଠି ଟାକୁ ଦାନ୍ତ ଘଷାଅ, ପାଇଖାନାରେ ବସାଇ ଝାଡ଼ା କରାଅ । ଖୋଇ ପେଇ ଟିଫିନ୍ ଦେଇ ବିଦା କରିବାରହୋ-ହାଲ୍ଲାରେ ମୋର ଯେ କେବଳ ପ୍ରାତଃ କାଳୀନ ନିଦ୍ରାର ବ୍ୟାହତ ହେଉଥିଲା ସେ କଥା ନୁହଁ ମୋତେ ମଧ୍ୟ ରିତିମତ ସାହାଯ୍ୟ କରିବାକୁ ପଡୁଥିଲା । ଶୀତଦିନେ ପୁଅ ରେଜେଇ ଭିତରୁ ଜମ୍ମା ବାହାରିବାକୁ ଚାହୁଁ ନଥିବା ବେଳେ ପୁଷ୍ପା ଟାକୁ ଭିଡି ଭିଡି ମୃଦୁ ଧମକ ଦେଉଥିବେ ଦେଖ୍ ଆଜି ଡାଏରୀରେ ଲେଖିଦେବି ତୋ'ର ମିସ୍‌ଙ୍କ ପାଖକୁ ତୁ ଲେଜି ହୋଇ ଯାଉଛୁ ବୋଲି ।

ମୁଁ କହୁଥିବି ଉଠ୍ ବାପା -ଏ ଯୁଗ ଶୋଇବାର ଯୁଗ ନୁହେଁ ଧାଇଁବାର ଯୁଗ । ଏ ଶତାବ୍ଦୀରେ ଶିକ୍ଷା ନାଁରେ ଯେଉଁ ଗଣ ଦୌଡ଼ ଚାଲିଛି ସେଥିରେ ତୋ' ଶୈଶବୀୟ ଅଝଟ କିମ୍ବା ଚପଳତାର ସ୍ଥାନ ନାହିଁ । ଏ ଶୈତାନୀ ଶିକ୍ଷା ଦଳି ମକଚି ଦେଉଛି ତୁମ ମାନଙ୍କର ବାଲ୍ୟ କଳିର ବୟସକୁ । ହେଲେ ଆମେ ନାଚାର ବାପା-ତୋ' ଭିତରେ ତ ଆମେ ସବାର ହୋଇଛୁ ସେଥିପାଇଁ ଏ ପାଠ ତୁ ପଢୁନୁରେ ବାପା ଆମେ ବି ପଢୁଛୁ ।

ପୁଅର ପ୍ରୋଗ୍ରେସ୍ ରିପୋର୍ଟ ଦେଖି ଖୁସି ହୁଅନ୍ତି ପୁଷ୍ପା । ମୁଁ କହେ ଶାରୀଟିଏ ଶିଖିଥିବା ଦୁଇପଦ କଥା କହିଦେଇ ପାରେ ସତ ମାତ୍ର ତା' ମନର ଅଭିବ୍ୟକ୍ତିକୁ ସେ କ'ଣ ପ୍ରକାଶ କରିପାରେ ? ଠିକ୍ ସେମିତି ପିଲାମାନେ ଗୋଟେ ଯୋଡ଼େ ରାଇମ୍ ଶୁଣାଇ କେତେଟା ଶବ୍ଦ କହି ଏ ଯେଉଁ ନମ୍ବର ରଖୁଛନ୍ତି ସେଥିରେ ଏତେ ଆତ୍ମ ସନ୍ତୋଷ ଲାଭ କରିବାର କିଛି ନାହିଁ । ଅସଲ ଯୁଦ୍ଧ କ୍ଷେତ୍ରତ ବହୁ ଦୂରରେ ।

ପୁଅର ପାଠ ସହ ଏଟିକ୍ୟୁଟି ଉପରେ ମଧ୍ୟ ଢ଼େର ଧ୍ୟାନ ଦେଉଥିଲେ ପୁଷ୍ପା । କିଏ ଘରକୁ ଆସିଲେ ତାକୁ ଗ୍ରିଟ୍ କରିବା ପାଇଁ ସମୟ ଅନୁଯାୟୀ ଗୁଡ୍‌ମର୍ଣ୍ଣିଂ, ଗୁଡ୍ ଆଫଟର ନୁନ୍, ଗୁଡ୍ ଇଭିନିଙ୍ଗ କହିବା ଏବଂ ଯିବାବେଳେ ବାଏ-ଟା-ଟା କହିବା ପାଇଁ ସେ ଶିଖାଉ ଥିଲେ । କାହାଠାରୁ କିଛି ଗ୍ରହଣ କରିବା ସଙ୍ଗେ ସଙ୍ଗେ ତାଂକୁ ଥେଙ୍କ୍ ୟୁ କହିବା ଏବଂ ଜଣେ ଥେଙ୍କ୍ୟୁ କହିଲେ ତାକୁ ନୋ-ମେନ୍‌ସନ୍

ପ୍ଲିଜ୍ ଇତ୍ୟାଦି କହିବା କମନ୍ କଟ୍‌ସି । ପୁଅ ଶୁଆଭଳି ଏ ସବୁ କଥା ମନେ ରଖୁଥିଲେ ମଧ୍ୟ ସ୍ଥଳ ବିଶେଷରେ କେତେ ବେଳେ ଭୂଲମଧ କରି ପକାଉଥଲା ଯେମିତି ସନ୍ଧ୍ୟାବେଳେ ଘରକୁ ଆସିଥିବା କୌଣସି ଅତିଥିଂକୁ ଗୁଡ୍‌ମର୍ଣ୍ଣିଂ କହିଦେବା କିମ୍ବା କିଏ ତାକୁ କୌଣସି ଜିନିଷ ଦେଲେ ଥ୍ୟାଙ୍କ୍ ୟ୍ୟୁ କହିବା ଜାଗାରେ ନୋ ମେନ୍‌ସନ୍ କହି ପକାଉଥିଲା । ଏତିକିରେ ପୁଷ୍ପା ରାଗି ଅଗ୍ନିଶର୍ମା ହୋଇଯାଇଥିଲେ । ରିତିମତ ରାଗ ଶୁଝାନ୍ତି ପିଲାଟା ଉପରେ । ମୁଁ ବୁଝାଇବାକୁ ଯାଇ କହେ-ପିଲାଟା ଏତେ କଥା ମନେ ରଖିବା ବେଳେ କିଛିଟା ଭୂଲ ଭଟକା ତ ହୋଇ ଯିବ ନା ।

ଦିନେ ମୁଁ ମାର୍କେଟରୁ ଫେରିବାବେଳକୁ ପୁଷ୍ପା ଡ଼ାଇନିଂ ଟେବୁଲ ଉପରେ ଗୁଡ଼ାଏ ଅଂଗୁର,ଆପଲ, ମିଠା, ମିକ୍‌ଚର ରଖି ବାଡିଟିଏ ଧରି ପୁଅକୁ ଧମକାଉ ଥାନ୍ତି-ଖାଆ, କେତେ ଖାଇବୁ ଖାଆ । ଆଜି ଖୋଇଖୋଇ ତୋ' ପେଟ ନ ଫଟାଇଲା ଯାଏ ମୁଁ ଛାଡୁନି । ଖାଇ ସାରିବା ପରେ କହ ତୋ'ର ପ୍ରତିଦିନ କ'ଣ କ'ଣ ଖାଇବା ଦରକାର ମୁଁ ତତେ ଆଣି ଦେବି । ଏମିତି ମାଗିଖିଆ ଛୁଆଙ୍କ ପରି କ'ଣ ଖାଉଛୁ କାହା ଘରକୁ ବୁଲିଗଲେ ? ସେ ମାନେ କ'ଣ ଭାବୁଥିବେ ? ଛୁଆକୁ ଏମାନେ ବୋଧେ କିଛି ଖାଇବାକୁ ଦେଉ ନାହାନ୍ତି ତେଣୁ ସେମିତି ରଂଙ୍ଗ ହେଉଛି ଖାଇବା ପାଇଁ । ମୁଁ ପଚାରିଲି କ'ଣ ହୋଇଛି ?

କ'ଣ ଆଉ ହେବ-ପୁଅ କିର୍ତ୍ତି ଦେଖାଉଛି ।

ମୁଁ କହିଲି -କ'ଣ କଲା ସିଏ ?

ପାଣିଗ୍ରାହୀ ବାବୁଙ୍କ ଘରକୁ ବୁଲି ଯାଇଥିଲୁ, ସେଠି ତା'ଙ୍କ ପୁଅ ସହ ମିଶି ଖାଇବା ପାଇଁ କମ୍ ଆଖଡ଼ା ଲଗାଇଲା । ସବୁ ପ୍ଲେଟ୍‌କୁ ଆବୋରି ବସିଲା ଖାଇବା ପାଇଁ । ମୁଁ ରାଗରେ ତା ଆଡ଼କୁ ଯେତେ କଟ୍‌ମଟ୍ କରି ଚାହିଁଲେ ମଧ୍ୟ ତା'ର ସେଥିପ୍ରତି ଭୃକ୍ଷେପ ନଥିଲା ।

ପିଲା ଲୋକ- ସାଂଗ ମିଳିଯିବାରୁ ମିଶିଯାଇ କ'ଣ ଟିକିଏ ଦୁଷ୍ଟାମୀ କରିଥିବ ସେଥିରେ ଏତେ ସିରିୟସ୍ କାହିଁକି ?

ସିରିୟସ୍ ହେବିନି? ମିକ୍‌ସଚର କେମିତି ଖାଉଥିଲା ଜାଣ ? ପୂରା ପାଞ୍ଚଆଂଗୁଳି ପାଟିରେ ପୂରାଇ ନଅଙ୍କିଆ ପିଲାଙ୍କ ପରି । କଦଳୀ ସରିଯିବ ବୋଲି ତାକୁ ଟିକେ ଟିକେ ଚାଟୁଥାଏ । ମୋତେ

ସବୁଠୁ ବାଧିଲା କ'ଣ ଜାଣ- ପାଣିଗ୍ରାହୀ ବାବୁ ଙ୍କ ମିସେସ୍ କହିଲେ ମୋ ପୁଅତ କେବେ ଏମିତି ହୁଏନି ଖାଇବା ପାଇଁ । ଫ୍ରିଜରେ ଅଂଗୁର,ଆପଲ ସତୁଥିଲେ ମଧ୍ୟ ସେ ଆଡ଼କୁ ଧ୍ୟାନ ଦିଏନାହିଁ । କେତେ ବାଧ୍ୟ କରି କରି କ୍ଷୀରରେ ହର୍‌ଲିକ୍ସ୍ କିମ୍ବା ଭିଭା ନ ମିଶାଇଲା ଯାଏଁ ଛୁଏଁ ନାହିଁ । ଆଜି ଆପଣ ଙ୍କ ପୁଅର ଦେଖାଦେଖି ସେ ମଧ୍ୟ ଖାଇବା ପାଇଁ କେମିତି ହେଉଛି ଦେଖନ୍ତୁ । ପୁଅର ଏମିତି ଖାଇବା ଢ଼ଙ୍ଗକୁ ତାଂକ କଥା ଶୁଣି ମୁଁ ଅପମାନରେ ଜଳି ଯାଉଥିଲେ ମଧ୍ୟ କିଛି କହି ପାରିଲି ନାହିଁ । କ'ଣ ବା କହିବି-ମୁଁ ତ ତା'ର ଏମିତି ଅଦ୍‌ଭୂତ ଆଚରଣ ଦେଖି ହତବାକ୍ ହେଇଯାଇଥିଲି ସେଇଠି ମୁଁ ମନେମନେ ଭାବିଥିଲି ଆଜି ପୁଅ ଉପରେ ପ୍ରତିଶୋଧ ନେବି ତାକୁ ପେଟ ଫଟାଇ ବାନ୍ତି କଲାଯାଏ ଖୋଇବି ଆଉ ଯେମିତି, ଏମିତି ଢ଼ଙ୍ଗ ଢ଼ାଙ୍ଗ କେଉଁଠି ନ ଦେଖାଇ ଖାଇବାକୁ ।

ଦେଖ ! ତମେ ଯେଉଁ କଥାରେ ଏତେ ସିରିୟସ୍ ହେଉଛ ସେଇଟା ସେମିତି କିଛି ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ ।ଅବଶ୍ୟ ମୁଁ ମାନୁଛି ପାଣିଗ୍ରାହୀ ବାବୁଙ୍କ ସ୍ତ୍ରୀଙ୍କ ମନ୍ତବ୍ୟ ତମକୁ ବାଧିଥିବ । ମାତ୍ର ତମ ମାନଙ୍କର ପିଲାର ମନସ୍ତତ୍ତ୍ୱ ଜାଣିବା ଦରକାର । ଆମ ପୁଅ ସେମିତି ବ୍ୟବହାର କାହିଁକି କଲା ଜାଣ ? ଆମ ଘରେ ତା'ର ଖାଇବା ନେଇ କୌଣସି ପ୍ରତିଦ୍ୱନ୍ଦୀ ନାହାନ୍ତି । ସେଠାରେ ତାର ପ୍ରତିଦ୍ୱନ୍ଦୀ ଥିଲା । ତେଣୁ ସେ ଖାଇବାରେ ପ୍ରତିଯୋଗୀତା କରୁଥିଲା । ଆଛା ତାଂକ ପୁଅ ମଧ୍ୟ ସେମିତି ବ୍ୟବହାର କରୁଥିଲାକି ନାହିଁ ? ସେ ମଧ୍ୟ ଆମ ପୁଅକୁ ତାର ପ୍ରତିଦ୍ୱନ୍ଦୀ ବୋଲି ଧରିନେଇଥିଲା । ଦୁଇପ୍ରତିଯୋଗୀଙ୍କର ପ୍ରତିଯୋଗୀତାକୁ ତମେ ମାନେ ଉପଭୋଗ ନ କରି ଏତେ ଉତ୍ କ୍ଷିପ୍ତ ହେବାର କିଛି କାରଣ ନାହିଁ ।

ପୁଷ୍ପା କ'ଣ ବୁଝିଲେ କେଜାଣି ଶାନ୍ତ ଅଥଚ ଦୃଢ଼ ଭାବରେ ପୁଅକୁ ଆଦେଶ ଦେଲେ ଯାଆ- ମୋତେ ଓ୍ୱାନ୍ ଠାରୁ ହନ୍‌ଡ୍ରେଡ୍ ଯାଏଁ ଲେଖିକରି ଦେଖା - ଇନ୍ ଓ୍ୱାର୍ଡସ୍ । ମନେ ରଖ ଗୋଟିଏ ବି ଯେପରି ଭୁଲ୍ ନହୁଏ ।

ପୁଅର ପାଠପଢ଼ା ସହ ଅନ୍ୟ କରିକୁଲାର ଆକ୍ଟିଭିଟିଜ୍ ଉପରେ ତାଙ୍କର ନଜର ମଧ ଥିଲା ତୀବ୍ର । ଖେଳକୁଦ, କସରତ ଅପେକ୍ଷା ଡିବେଟ୍‌ରେ ଭାଗ ନେବାକୁ ତାକୁ ସେ ବିଶେଷ ଭାବରେ ଉତ୍ସାହ ଦେଉଥିଲେ ଗୋପବନ୍ଧୁ ଜୟନ୍ତିରେ ସବୁ ଶ୍ରେଣୀରେ ପିଲାଙ୍କ ପାଇଁ ତର୍କ ପ୍ରତିଯୋଗୀତା ଥାଏ ।

ପୁଷ୍ପା ମତେ କହିଲେ ପୁଅରତର୍କ ପ୍ରତିଯୋଗୀତା ଅଛି-ଗୋପବନ୍ଧୁଙ୍କ ଉପରେ, ମୋ ବୁଦ୍ଧିକନି

କହିପାରିଲା ଭଳି ଅଳ୍ପ କିଛି ଲେଖିଦିଅତ ।

ମୁଁ କହିଲି ସେ ଛୋଟ ପିଲାଟା କ'ଣ କହିବ ? ତା'ପରେ ଛୋଟ ପିଲାଙ୍କ ପାଇଁ ତର୍କ ଲେଖିବା କଷ୍ଟକର । ତାଂକ ପାଇଁ ଭାଷା ଓ ସମୟକୁ ଧ୍ୟାନ ଦେଇ ଲେଖିବାକୁ ହେବ । ମୁଁ ପାରିବିନି ବାବା-ତମେ ବରଂ ତା ବହି ଦେଖି ସରଳରେ ଅଳ୍ପ କିଛି ଲେଖି ଦିଅ ।

ପୁଷ୍ପା ଭାଷଣ ଲେଖିସାରି ତାକୁ ମୁଖସ୍ଥ କରାଇଲେ ପୁଅକୁ । ସେ ମୁଖସ୍ଥ କଲାପରେ ତାକୁ ରିତିମତ ଠିଆ କରାଇ କେମିତି ଠିଆହେବ, କେମିତି କହିବ, କେଉଁଠି ହାତ ହଲାଇବ ଇତ୍ୟାଦି ଶିଖାଇଲେ । ଏମିତିକି ଗୋଟିଏ ବାଡ଼ି ଆଣି ତା' ଦେହରେ ଧୂପ ଖୋଳର ନଳୀ ଟିଏ ବାନ୍ଧି ତାକୁ ମାଇକ୍ରୋଫୋନ୍ କରି ନିଜେ ଓ ମୋତେ ଦର୍ଶକ ଭାବରେ ଛିଡ଼ାକରି ପୁଅକୁ ଭାଷଣ ଦେବାକୁ କହିଲେ, ପୁଅବି ତାଂକଇଛା ଓ ମନମୁତାବକ ଅଭ୍ୟାସ କରୁଥିଲା ଏବଂ କହି ମଧ୍ୟ ପାରୁଥିଲା । କାଳେ ସେ କହିବା ବେଳେ ନର୍ଭସ ହୋଇ ପଡ଼ିବ ତେଣୁ ସେ ସବୁବେଳେ ମନେ ପକାଇ ଦେଉଥିଲେ ତୁଭାବିବୁ ଯେ, ମୋ ବ୍ୟତୀତ ଆଉ କେହି ସେଠାରେ ନାହାନ୍ତି ।

ପୁଅ ପ୍ରଶ୍ନ କଲା- ସମସ୍ତେ ତ ମୋ ଆଗରେ ବସିଥିବେ ମୁଁ କେମିତି ଭାବିବି କେହି ନାହାନ୍ତି ବୋଲି ?

ମୁଁ କ'ଣ କହୁଛି କେହି ନଥିବେ ବୋଲି-ମାତ୍ର ତୁ ମନେ ମନେ ଧରିନେବୁ କେହି ନାହାନ୍ତି । ତୁ କପିଳ ଦେବର ଆକ୍ସନ୍ ସୁଜ୍‌ର ଆର୍ଡ଼ଭାଟାଇଜ୍‌ମେଣ୍ଟ ଦେଖୁଛୁନା ?

ହଁ- ହଁ ଯେଉଁଠି ତାଯୋତାରୁ ଭକ୍‌ଭକ୍ ହୋଇ ପବନ ବାହାରୁଛିତ ?

ହଁ ହଁ ସେଇଟା ।

ମମି ତମେ ତ ଥରେ ମୋତେ କହିଥିଲ ପବନକୁ ଦେଖିବି ହୁଏନି କି ଛୁଇଁ ହୁଏନି । ମାତ୍ର ତା' ଯୋତାର ଯେଉଁ ପବନ ବାହାରୁଛି ତାକୁତ ଦେଖିହେଉଛି ?

ଧେତ୍ ବୋକା ସେଇଟା କେବଳ ବିଜ୍ଞାପନ ପାଇଁ ସେମିତି କରିଛନ୍ତି ନା । ହଉ ଅସଲ କଥା

ଶୁଣ -ସେ ଯେମିତି ଗୋଟେ ବିରାଟ ଷ୍ଟାଡ଼ିୟମ୍‌ରେ ଏକୁଟିଆ ବସିଛି କେହି ନାହାନ୍ତି ତୁ ସେମିତି ଭାବିବୁ ମୁଁ ଏଠି ଏକୁଟିଆ କହୁଛି କେହି ନାହାନ୍ତି ବୋଲି ।

ପୁଅ ଏ ଉଦାହରଣରୁ କ'ଣ ବୁଝିଲା କେ ଜାଣି ମୁଣ୍ଡ ଟୁଙ୍ଗାରୀ ଦେଲା । ମାତ୍ର ମୁଁ ମନେ ମନେ ହସୁଥିଏ ଏବଂ ଭାବୁଥାଏ ତର୍କ ପ୍ରତିଯୋଗିତାରେ ଭାଗ ନେଉଛି ପୁଅ ସମସ୍ତଙ୍କ ଆଗରେ କହି ପାରିଲେ ତା'ର ସାହସ ବଢ଼ିବ ବୋଲି- ସେଥିରେ ସେ କାହିଁକି ଭାବିବ ମୋ ଆଗରେ କେହି ନାହାନ୍ତି ବୋଲି ? ପ୍ରତିଯୋଗିତା ଦିନ ସମସ୍ତ ଅବିଭାବକ ଓ ଅବିଭାବିକାମାନଂକୁ ଡକା ଯାଉଥିବାରୁ ସ୍ତ୍ରୀ ମୋତେ ଏକରକମ ବାଧ୍ୟ କଲେ ପୁଅକୁ ଧରି ତା' ସ୍କୁଲକୁ ଯିବା ପାଇଁ । ମୁଁ ଯେତେ ଅନ୍ୟ ବାମର ଆଳ ଦେଖାଇଥିଲେ ମଧ୍ୟ ତାଂକର ଏକା ଜିଦ୍ ଥିଲା ପୁଅ ଆମର ପ୍ରଥମ ଥର ପାଇଁ ଷ୍ଟେଜ୍‌ରେ କହିବ, ଆମେ ଦେଖିବା କଥା । ଯେତେ ହେଲେ ଘରେ କହିବା ଓ ଷ୍ଟେଜ୍‌ରେ କହିବାର ଫରକ୍ ଅଛିନା । ଅଗତ୍ୟା ବାଧ୍ୟ ହୋଇ ସେମାନଂକୁ ଧରି କରି ଗଲି ।

ବାଟରେ ସ୍କୁଟର ଉପରେ ଆହୁରି ଥରେ ଦୁଇଥର ରିହର୍ସାଲ କରାଇ ନେଲେ ସେ ଯେମିତି ପୁଅ ଆଇ.ଏ.ଏସ୍. ପରୀକ୍ଷାର ମୌଖିକ ଦେବାକୁ ଯାଉଛି । ସ୍କୁଲରେ ପହଞ୍ଚି ପେଣ୍ଡାଲ ଉପରେ ଥିବା ମାଇକ୍ ଷ୍ଟାଣ୍ଡକୁ ଦେଖାଇ କହିଲେ ଦେଖ୍-ମାଇକ୍ରୋଫୋନ୍ ଆଗରେ ଏମିତି ଠିଆ ହେବୁ ଏ ପଟକୁ ଅନାଇବୁ ଇତ୍ୟାଦି ଇତ୍ୟାଦି.. ।

ସବୁ ପ୍ରସ୍ତୁତି ପରେ ପୁଅର ନାଆ ଯେତେବେଳେ ଡକାଗଲା ତାକୁ ସେ ଶେଷ ଥରକ ପାଇଁ ମନେ ପକାଇ ଦେଲେ ଭୁଲିବୁନି । ଡରିବୁନି, ମୁଁ ଯେମିତି କହିଛି ସେମିତି କହିବୁ । ମାଆ ଆଗରେ ବୀର ଦର୍ପରେ ହଁ-ହଁ ମାରି ଚାଲିଯାଉଥିବା ପୁଅ ଷ୍ଟେଜ୍ ପାଖରେ ପହଞ୍ଚିବା ବେଳକୁ ମୁହଁ ପୋତିବା ଆରମ୍ଭ କରିଦେଇଥାଏ । ଛୋଟପିଲା ଟାଏ ବୋଲି ତାର ଜଣେ ଶ୍ରେଣୀ ଶିକ୍ଷକ ତା ହାତ ଧରି ମାଇକ୍ରୋଫୋନ୍ ପାଖକୁ ନେଇ ଯାଇ ତା' ଉଚ୍ଚତା ଅନୁଯାୟୀ ମାଇକ୍ରୋଫୋନ୍ କୁ ନୁଆଁଇ ଆଣି କହିଲେ- ଏବେ ଆରମ୍ଭ କର ।

ଆରମ୍ଭ କରିବାକୁ ଯାଇ ଥଥ-ମମ ହୋଇ ପୁଅ ଦୁଇ ଚାରିଥର ଏପଟ ସେପଟକୁ ଚାହିଁଲା । ବଡ଼ କଷ୍ଟରେ ତା'ର ସ୍ମୃତିକୋଷକୁ କୋରି କୋରି ଶବ୍ଦଟିଏ ବାହାର କଲା ମାନନୀୟ...... ମାଆ ..ନ.ଅ.ଅ..ନୀ.ୟ...... । ସେହି ଶବ୍ଦଟିକୁ ଦୁଇ ଚାରିଥର କହିବା ପରେ ବଡ଼ ଅସହାୟ ହୋଇ ତା'ଶ୍ରେଣୀ ଶିକ୍ଷକଙ୍କ ଆଡ଼କୁ ଚାହିଁଲା । ଶିକ୍ଷକ ଯେତେବେଳେ ଜାଣିଲେ ସେ ଆଉ କହି ପାରିବ ନାହିଁ -

ସେତେବେଳେ କହିଲେ ଠିକ୍ ଅଛି ମନେ ପଡୁନି ଯଦି ଯାଆ । ଏତକ ଶୁଣି ସାରିବା ପରେ ସେ ଦୌଡ଼ି ଦୌଡ଼ି ପଳାଇ ଆସିଲା । ଷ୍ଟେଜ୍ ଉପରେ ତା'ର ଅବସ୍ଥା ଦେଖି ମୁଁ ଭାବୁଥିଲି ପୁଷ୍ପା ଏଇନେ ରାଗିକରି ଅଗ୍ନିଶର୍ମାହେଉଥିବେ । ପୁଅକୁ ଅନ୍ୟ କୌଣସି ପ୍ରତିଯୋଗିତା ଯଦି କହିପାରିଲେ ତେବେ ତାଙ୍କର ରାଗ ବଢ଼ିଯାଇପାରେ ତେଣୁ ତୁରନ୍ତ ଘରକୁ ଫେରିଯିବା ଉଚିତ୍ ।

ବଡ଼ ଆଶ୍ଚର୍ଯ୍ୟର କଥା ଫେରିବା ସମୟରେ ସେ ବାଟସାରା ପୁଅକୁ କିଛି କହି ନଥିଲେ । ଘରେ ପହଞ୍ଚି ଶାଢ଼ୀ ନବଦଳାଇ ବିଛଣା ଉପରେ ରାଗରେ ଗଡ଼ିପଡ଼ି କହିଲେ ମୁଁ ଯେତେ କଲେ କ'ଣ ହେବ ଯେମିତି ବାପ ସେମିତି ପୁଅତ ହେବ ।

ମୁଁ ଜାଣୁଥିଲି ଏବେ କିଛି କହିବା ଅର୍ଥ ଗୋଟିଏ ଝଡ଼ ବହିପାରେ, ତେଣୁ ମୁଁ ନୀରବ ରହି ଜଣାଇଲି ଯେମିତି ପୁଅର ଏ ବିଫଳତାରେ ତାଂକ ଠାରୁ ମୁଁ ଅଧିକ ମର୍ମାହତ ।

ତା'ପରେ ଆସୁଥିବା ବାର୍ଷିକ ପରୀକ୍ଷା ପାଇଁ ପୁଅକୁ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ପଢ଼ାଇବା ବେଳେ ତାକୁ ବାରମ୍ବାର କହୁଥିଲେ ତୋ ଦ୍ୱାରା ଗାଠତ କିଛି ହେବ ନାହିଁ ଅନ୍ତତଃ ପାଠରେ କରାମତି ଦେଖା ।

ପୁଅ ପରୀକ୍ଷା ଦେଲା । ପରୀକ୍ଷାରୁ ଫେରି ସେହି ପ୍ରଶ୍ନକୁ ପୁନଃ ପରୀକ୍ଷା ଦେଉଥିଲା ମମି ପାଖରେ । ତା'ର ଉତ୍ତର ଶୁଣି ସେ ଖୁସି ହେଉଥିଲେ ଯେ ପୁଅ ନିଶ୍ଚୟ କ୍ଲାସ୍‌ରେ ପୋଜିସନ୍ ରଖିବ । ପରୀକ୍ଷା ଫଳ ବାହାରିବା ଦିନ ସେ ନିଜେ ଯାଇଥିଲେ ସ୍କୁଲକୁ । ଫାଷ୍ଟ,ସେକେଣ୍ଡ,ଥାର୍ଡ଼ ଭିତରେ ପୁଅର ନାଁ ନଦେଖି ରାଗରେ ଫାଟିପଡ଼ି ଲିଷ୍ଟକୁ ଦେଖିବା ବେଳେ ପୁଅ ଯାଇ, ଥିଲା କାହିଁ କେତେ ପିଲାଙ୍କ ତଳେ । ଘରକୁ ଫେରିଲା ପରେ ମୁଁ ପଚାରିଲି କ'ଣ ହୋଇଛି ତା' ରେଜେଲଟ୍ ?

କ'ଣ ହେବ-ଚୋପା ? କୌଣସି ପୋଜିସନ୍ ନାହିଁ, କୁଆଡେ ଗଲା ସିଏ ?

ପୁଅ ଷ୍ଟଡ଼ି କିଟ୍‌ସ ଧରି ତା' ପଢ଼ା ଘରେ ଖେଳୁଥିଲା । ତାକୁ ଘୋଷାଡି ଘୋଷାଡି ଆଣି ପଚାରିଲେ-କାହିଁ କ'ଣ ହୋଇଛୁ କ୍ଲାସରେ ? ତୋ ପଛରେ ଆଉ କେତେ ଲାଗିଥିଲେ ତୁ କ୍ଲାସ୍‌ରେ ପୋଜିସନ୍ ରଖିଥାନ୍ତୁ ?

ପୁଅକୁ ମାରିବା ପାଇଁ ବାଡି ଖୋଜିଲାବେଳେ ମୁଁ କହିଲି ଏମିତି କଲେ ପିଲାଙ୍କର ପାଠ ହୋଇ ଯିବନି ।

ଆଉ କ'ଣ କଲେ ଏ କୁଳାଙ୍ଗାର କରି ପାରିଥାନ୍ତା କୁହ ?

ମୁଁ ପୁଅକୁ କାଖେଇ ପକାଇ କହିଲି-ବାପା ! ତମେ ପୋଜିସନ୍ ରଖିପାରିଲନି ନା.. ?

ପୁଅ ଭୟ ମିଶ୍ରିତ ସ୍ୱରରେ କହିଲା-ଯୋଗାନଙ୍କ ମମି ମାନେ 'ଫାଷ୍ଟ' ଚାହୁଁଥିଲେ ସେମାନେ ଫାଷ୍ଟ ହୁଅନ୍ତୁ ବୋଲି । ମୁଁ ଆଉ..

ମୁଁ ପୁଷ୍ପାଙ୍କୁ ଚାହିଁ କହିଲି ଏ ମମି ଡାଡି ମାନଂକ ପ୍ରତିଯୋଗିତାରେ ଜଣେ ତ କେହି ଫାଷ୍ଟ ହୋଇଥାଆନ୍ତା ପୁଅ ନ ହେଲା ନାହିଁ ।

# ଅନୁତ୍ତରିତ ପ୍ରଶ୍ନ

ସୁଜିତ୍‌କୁ ଆଜି ରାତିଟା ଅଟକାଇ ଦେବିକି ? ସନ୍ଧ୍ୟା ହୋଇଗଲାଣି ବସ୍ ମିଳିବ ବି ନାହିଁ- ହଷ୍ଟେଲରେ ତ ଗେଷ୍ଟ ରୁମ ଅଛି, ଅନ୍ୟ ଝିଅମାନଙ୍କ ଅବିଭାବକ ମାନେ ଆସିଲେ ତ ରହୁଛନ୍ତି ? ସୁଜିତ୍ ରହିଗଲେ କ୍ଷତିକ'ଣ ? ଏ କଥା ଚିନ୍ତା କରି ସୁଜିତ୍‌ଙ୍କ ପଛେ ପଛେ ତାଙ୍କ ସହ ଗପ କରି ହଷ୍ଟେଲ୍ ଗେଟ୍ ପର୍ଯ୍ୟନ୍ତ ଚାଲି ଆସିଲା ସୁଚି । ଗେଟ୍ ପାଖରେ ସୁଜିତ୍ କହିଲେ- ତମେ ଏଠାରୁ ଫେରିଯାଅ । ମୁଁ ଦେଖେ ବସ୍ ମିଳୁଛି କି ନାହିଁ । ଗୋଟି 'ଅଟକାଇବା' 'ନ ଅଟକାଇବା' ଦ୍ୱନ୍ଦ୍ୱରେ ସୁଚି ଥିବାବେଳେ ସୁଜିତ୍ କହିଲେ-ମୁଁ ଏବେ ଆସୁଛି ତାହେଲେ ? ସୁଚିର ପାଟିରୁ ବାହାରି ଆସୁଥିବା କଥା ପଦକ 'ଆଜି ରାତିଟା ଏଠାରେ ରହିଯାଆନ୍ତୁ' ଓଠ ପାଖରେ ଅଟକି ଗଲା । ତାର ନୀରବତାକୁ ବୋଧେ ସୁଜିତ୍ ସମ୍ମତି ବୋଲିଧରି ନେଲେ । ଧିରେ ଧିରେ ସୁଜିତ୍ ଚାଲି ଯାଉଛନ୍ତି । ଯେତେ ଇଚ୍ଛା ଥିଲେ ବି ସୁଜିତ୍‌କୁ ଏ ସନ୍ଧ୍ୟାରେ ନ ଛାଡି ଅଟକାଇଦେବାକୁ -ହେଲେ ଚେଷ୍ଟା କରି ମଧ୍ୟ କହି ପାରିଲାନି ସୁଚି ।

କିଛିବାଟ ଯାଇ ପଛକୁ ଫେରି ଚାହିଁଲେ ସୁଜିତ୍ -ସୁଚି ଛିଡା ହୋଇଛି ପଛରେ ।ସୁଚି ଭାବିଲା ଏଇ ମୁହୂର୍ତ୍ତରେ ତାଙ୍କୁ ହାତ ଠାରି ଅଟକାଇବକି ? ଭାବୁଭାବୁ ଅନ୍ୟମନସ୍କତାରେ ସେ ହାତ ଉଠାଇ ଦେଲା । ସୁଜିତ୍ ମଧ୍ୟ ତାଙ୍କର ଗୋଟିଏ ହାତ ଉଠାଇ ପୁନଶ୍ଚ ବିଦାୟ ଜଣାଇଲେ । ଚେଷ୍ଟା କରି ମଧ୍ୟ ଡ଼ାକି ପାରିଲା ନାହିଁ ପଛରୁ ସୁଚି । ସୁଜିତ୍ ଧିରେଧିରେ ତା'ର କଲେଜ କ୍ୟାମ୍ପସ୍ ଡେଉଁଛନ୍ତି, ଏଠାରୁ ଡାକିଲେ ତା'ର ଡାକ ଆଉ ଶୁଭିବନି । ଲୋକେ କ'ଣ ଭାବିବେ ସେ ଏତେ ବଡ ପାଟି କରି ଡ଼ାକିଲେ ? ହଷ୍ଟେଲର ବିଯ୍ୱରର୍‌କୁ ପଠାଇ ଫେରାଇ ଆଣିବକି ? କିଛି ନିଷ୍ପତ୍ତିରେ ପହଞ୍ଚି ପାରୁନ ଥିବାର ବିଚିତ୍ର ବ୍ୟସ୍ତତାରେ ଅସ୍ଥିର ହୋଇ ପଡୁଥିଲା ସୁଚି । କାହିଁକି ଚେଷ୍ଟାକରି ମଧ୍ୟ କହିପାରିଲା ନାହିଁ-'ସଂଧ୍ୟା ହେଲାଣି,ଆଜି ଏଠାରେ ରହିଯାଅ, କିଛି ଅସୁବିଧା ହେବନି, ଗେଷ୍ଟ୍ ରୁମତ ଅଛି ?' ବହୁତ୍ ଦୂରରୁ ଆଉଥରେ ପଛକୁ ଚାହିଁଲେ ସୁଜିତ୍ ।ସେ ଚାହିଁବାରେ ଟହଲି ଗଲା ସୁଚିର ସମସ୍ତ ଅସ୍ତିତ୍ୱ । ତାଙ୍କୁ ନଅଟକାଇ ଏ ସନ୍ଧ୍ୟାରେ ଛାଡ଼ି ଦେଇଥିବା ଗ୍ଲାନିରେ ସେ ବୁଡ଼ିଗଲା ।

ସୁଜିତ୍‌ଙ୍କ ଯିବା ବାଟକୁ ଚାହିଁ ରହିଲା ସୁଚି ଆଖିର ଅନ୍ତରାଳରୁ ପାରି ହେବା ପର୍ଯ୍ୟନ୍ତ । ତା'ପରେ ହଷ୍ଟେଲକୁ ଫେରି ଆସିଲା, କିନ୍ତୁ କେମିତିକା ଗୋଟେ ଅସ୍ଥିରତା ତାକୁ ଚଞ୍ଚଳ କରି

ପକାଉଥିଲା । ବିଛଣା ଉପରେ ଗଡ଼୍‌ପଡ଼୍ ହେଲା-ଭଲ ଲାଗିଲା ନାହିଁ ପୁଣି ଉଠି ବସିଲା । ଉଠି ବସି ଭାବିଲା-ତମକୁ ଆଜି ରାତିକ ଆତିଥ୍ୟ ଦେବାର ସୌଭାଗ୍ୟ ମୋର ଜୁଟିଲାନି ସୁଜିତ୍ । ତମ ସହ ଏଇ ମୋର ପ୍ରଥମ ସାକ୍ଷାତ । ଆଗରୁ ଯାହାଚିଠି ଭିତରେ ତୁମକୁ ଚିହ୍ନିଥିଲି । କିନ୍ତୁ ପ୍ରଥମ ସାକ୍ଷାତରୁ ତମେ ମୋତେ କେମିତି ଏତେ ଆପଣର ଲାଗିଲ ଯେମିତି ମୁଁ ତୁମକୁ ଜନ୍ମ ଜନ୍ମ ହେଲା ଚିହ୍ନିଛି । ଇଛା ହେଉଥିଲା- ତମେ ଆଜି ଏଠାରେ ରହିଥା'ନ୍ତ, ରାତି ଭରି ତୁମଠାରୁ ଜହ୍ନ ଓ ତାରାଙ୍କର ଗପ ଶୁଣି ଥାଆନ୍ତି ଏବଂ ଗୀତ ଗାଇ ଗାଇ ତୁମକୁ ଶୁଆଇ  ଦେଇଥାଆନ୍ତି । କିନ୍ତୁ ସେତିକି ସୌଭାଗ୍ୟ ମୋର ଜୁଟିଲାନି ।

ଚିଠି ଭିତରେ ତୁମକୁ ମୁଁ ଯେତିକି  ସୁନ୍ଦର ସ୍ୱପ୍ନର ପୁରୁଷ ବୋଲି ଭାବିଥିଲି ତୁମେ ପ୍ରକୃତରେ ତା'ଠାରୁ ଢ଼େର ଅଧିକ । କିନ୍ତୁ ଚିଠି ଭିତରେ ମୁଁ ତୁମକୁ ଯେତିକି କଥାକହି ପାରୁଥିଲି ତୁମକୁ ଦେଖିବା ପରେ  ହଠାତ୍ ସବୁ କେମିତି  ବ୍ୟତିକ୍ରମ ହୋଇଗଲା । ମୋ ଆମନ୍ତ୍ରଣରେ ତମେ ଏଠାକୁ ଆସିଥିଲ ମାତ୍ର ମୋ ଆମନ୍ତ୍ରଣ ଜନୀତ କୌଣସି ବିଷୟରେ ତ ଆମେ କଥା ହୋଇ ପାରିଲେ ନାହିଁ ? ଚିଠି ଭିତରେ ତମକୁ ଲେଖିଥିବା କଥାସବୁ ତୁମକୁ ଦେଖିବା ପରେ ସ୍ୱପ୍ନ ପରି ଲାଗିଲା । ଦେଖାହେବା ପରେ ତୁମେ କେମତି ଏତେ ସ୍ୱାଭାବିକ ଭାବେ କଥାବାର୍ତ୍ତା ଆରମ୍ଭ କଲ ? ଏଇ ମୋ କଲେଜ ଓ ତମ ଚାକିରୀ, ସେଠାରୁ ବଦଳି ହୋଇ ପାଖକୁ ଆସିବାର ସମ୍ଭାବନା କମ୍ । ଭଡ଼ା ଘରର ଅସୁବିଧା, ସେ ଜଳବାୟୁ ତମକୁ କେମିତି ସୁହାଉନି, ଏ ଚାକିରୀରେ ପଶିବା ପରଠାରୁ ତମେ କେମିତି ଲେଖା ଲେଖି ପାଇଁ ସୁବିଧା ପାଉନ, ହୋଟେଲରେ ଖାଇ ଖାଇ ତମ ଦେହ କେମିତି ଭଲ ରହୁନି, ବ୍ୟାଙ୍କରୁ ଫେରିବାପରେ ଶୂନ୍ୟ କ୍ୱାଟର ତୁମକୁ କେମିତି ଖାଁ ଖାଁ ଲାଗେ । ତମେ କିନ୍ତୁ ପ୍ରକୃତରେ କ'ଣ କହିବାକୁ ଚାହୁଁଥିଲ ମୁଁ ଜାଣୁଥିଲି ।ସେତିକି କଥା କହିବା ପାଇଁ ଏତେ ମାନସିକ ପ୍ରସ୍ତୁତି ପରେ ଏତେ ବାଟ ଆସି ଏତେ ବୁଲେଇ ବଙ୍କେଇ କହି ମଧ୍ୟ ଉଚ୍ଚାରୀ ପାରିଲ ନାହିଁ ସେ ପଦଟି  କେମିତି ? ତମେ ପରା ପୁରୁଷ ? ଏତେ ଲାଜ କେମିତି ଶିଖିଲ ? ଅତି କଷ୍ଟରେ ବୋଧହୁଏ ଏତିକି କହିଛ-'ମୋର ଗୋଟେ ଖରାପ ଅଭ୍ୟାସ ଅଛି ସୁଚି ।' ମୁଁ ସତରେ ଡ଼ରିଯାଇଥିଲି ସୁଜିତ୍  । ମୁଁ ଭାବିଲି ତମେ ଆଉ ମଦ, ଗଞ୍ଜେଇ, ସ୍ମାକ୍ ଖାଉନା ତ? ମୋର ଉତ୍କଣ୍ଠାର  ଚରମ ମୁହୂର୍ତ୍ତରେ ତମେ କଥାଟିକୁ ଏମିତି କହିଦେଲ ଯେ ମୁଁ ଭିତରେ ଭିତରେ ହସିହସି ନାକେଦମ୍ ହୋଇଗଲି । ତମେ ମନେ ମନେ ଭାବୁଛ ତମେ ଏକା ଭଲ ପାଇଜାଣିଛ ନୁହେଁ ? କ'ଣ କହିଲ-'' ମୁଁ ଯାହାକୁ ଭଲ ପାଏ ଅତି ମାତ୍ରାରେ ଭଲପାଏ- ସହିପାରିବତ ?'' ମୁଁ ସାମାନ୍ୟ ହସିଲି । ତମେ ପ୍ରଶ୍ନ କଲ-ହସିଲଯେ ? ଆଉ ମୁଁ କ'ଣ କରିଥାନ୍ତି କୁହତ ସୁଜିତ୍ ? କୌଣସି ଝିଅ କ'ଣ କେବେ ଏ ପ୍ରଶ୍ନର ଉତ୍ତର ଦେଇ ପାରିବ ? କିନ୍ତୁ ଇଛା ହେଉଥିଲା ତୁମକୁ କହିବା ପାଇଁ ଆଉଥରେ ସେ ପଦକ କୁହତ ସୁଜିତ୍ ।

ସୁଚି ଆଉ ନିଜ ରୁମ୍‌ରେ ସ୍ଥିର ହୋଇ ବସି ପାରିଲା ନାହିଁ । ସୁଜିତ୍‌ଙ୍କର ପ୍ରଥମ ଚିଠି ତା'ର ଗୋଟିଏ ଗଛ ଉପରେ । ସାଧାରଣ ଚିଠିଟିଏ, କିନ୍ତୁ ସେ ଚିଠିରେ ମୋ ଗଛର ଶୂନ୍ୟତା ଦେଇ ତମେ କେମିତି ମୋର ପୂର୍ଣ୍ଣତାର ଅଙ୍କି ପାଲଟିଗଲ ସୁଜିତ ? କେବଳ ଚିଠି ଭିତରେ ଦୁଇଟି ଅଦେଖା ଆତ୍ମା ପରସ୍ପର ର ଏତେ ଆପଣାର ଓ ଏତେ ନିବିଡ଼ ହୋଇଗଲେ କେମିତି ? ଆଜି ତମେ ଆସିଥିଲ ମୋର ଅନୁରୋଧରେ । ତମକୁ ଏତେ ପାଖରେ ପାଇଥିଲି- ମାତ୍ର ରାତିକ ପାଇଁ ମଧ୍ୟ ତୁମକୁ ଆତିଥ୍ୟ ଦେଇ ପାରିଲି ନାହିଁ । ତମେ କ'ଣ ଏକଥାକୁ ବିଶ୍ୱାସ କରିବ କେବଳ ମୋ ଛାତ୍ରୀମାନଙ୍କ ଆଗରେ ମୋର ଆତ୍ମସମ୍ମାନର ଭୟ ପାଇଁ ମୁଁ ତୁମକୁ ଅଟକାଇ ପାରିଲି ନାହିଁ ? ତମର ମୋର ସଂପର୍କକୁ ନେଇ ଗୁଞ୍ଜରଣ ଉଠୁ ମୋର ଭୟ ନାହିଁ-ମାତ୍ର ଭୟଥିଲା ମୋ ଛାତ୍ରୀଙ୍କର ସନ୍ଦେହୀ ଦୃଷ୍ଟିକୁ ମୁଁ ଏଡ଼ାଇ ପାରିଥାଆନ୍ତି ତ ?

ତମେ ଏଇନେ ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରିଥିବ ତୁମ ସହରକୁ ଯାଉଥିବା ବସ୍‌କୁ ନା ଆଉ ବସ୍ ନାହିଁ ବୋଲି ଜାଣିସାରିବା ପରେ କୌଣସି ଲଜିଂଖୋଜୁଥିବ ? ଯଦି ବସ୍ ପାଇ ଯାଇଥିବ ତେବେ ବସ୍ ଭିତରେ ବସି କଣ ଭାବୁଥିବ ସୁଜିତ୍ ? ଚିଠିପଢ଼ି ମନେ ମନେ ଭାବୁଥିବା ଝିଅଟିର ମୁହଁଠାରୁ କେତେ ଫରକ ଲାଗିଲା ତୁଳନା କରୁଥିବ ନୁହେଁ ? ମୁଁ ତୁମ ଭାବାବେଗକୁ କେତେଦୂର ଛୁଇଁ ପାରିବି ଜାଣେନା । ମାତ୍ର ତୁମେ ମୋର ଆତ୍ମାକୁ ଯେପରି ଭାବରେ ଆକର୍ଷି ଯାଉଛ ଯଦି ଆମ ସଂପର୍କ ମିଥ୍ୟା ହୋଇଯାଏ ମୁଁ ମୁକୁଳିବି କେମିତି ? ସତରେ ସୁଜିତ୍ ତମେ କ'ଣ ଏତିକି ପ୍ରାପ୍ୟରୁ ମୋତେ ବଞ୍ଚିତ କରିବ ?

ସୁଚି ଆଉ ନିଜ ରୁମ ଭିତରେ ସ୍ଥିର ହୋଇ ବସି ପାରିଲା ନାହିଁ । ବାହାରକୁ ବାହାରି ଆସିଲା । ବାହାରେ ବହଳ ଅନ୍ଧାର । ଏଭିତରେ ଏତେ ରାତି ହୋଇ ଗଲାଣି ନା ? ହଷ୍ଟେଲ୍ ବାରଣ୍ଡାରେ ଧିରେ ଧିରେ ଚାଲିଲା ସୁଚି । ଲାଇନ୍ କଟ୍, ହଷ୍ଟେଲ୍ ସାରା ଅନ୍ଧାର । ଅଳ୍ପ କେତେକ ପିଲା ମହମବତୀ କିମ୍ବା ଲ୍ୟାମ୍ପ ଜାଳି ଆସନ୍ତା କାଲିର ଟିଚିଂ ପାଇଁ ପ୍ରସ୍ତୁତ ହେଉଛନ୍ତି । କେତେକ ଛାତ୍ରୀ ଆସନ୍ତା କାଲିର କ୍ଲାସ କେମିତି ନେବେ କଥାବାର୍ତ୍ତା ହେଉଛନ୍ତି । ଟ୍ରେନିଂ ନେଉଥିବା ଜଣେ ବୟସ୍କା ମହିଳା (ଯେ ଦୁଇଟି ପିଲାଙ୍କୁ ଘରେ ଛାଡି ଦେଇ ଆସିଛନ୍ତି) ତାଙ୍କର ଘର, ସ୍ୱାମୀ ଓ ପିଲାଙ୍କ ବିଷୟରେ ଗପୁଥିଲେ । ପିଲା ଦୁଇଟି ତାଙ୍କର ଭାରି ମନେ ପଡୁଛନ୍ତି । ସେମାନଙ୍କ ଅଝଟରେ ଶାଶୁ କେମିତି ବ୍ୟସ୍ତ ହୋଇପଡୁଥିବେ । ତା'ର ମନ ଆଉ ଭଲ ଲାଗୁନି । କାଲି ମ୍ୟାଡମ୍‌କୁ କହିଦେଇ ଚାଲିଯିବ । ତା'ର କଥା ଶୁଣି ସୁଚି ଟିକିଏ ହସି ଦେଲା । ତା' ପରେ ଭାବିଲା ସତରେ ଚାକିରୀର

ମୋହ ସ୍ୱାମୀ ଓ ପିଲାମାନଙ୍କଠାରୁ ତାଙ୍କୁ କେମତି ଅଲଗା କରି ରଖୁଛି । ତା'ର ସ୍ୱପ୍ନ ଯଦି ସତ୍ୟ ହୁଏ ତା'ପାଇଁ ତ ଦିନେ ଏଦିନ ଆସିବ ?

ଆଉ ଟିକିଏ ଆଗକୁ ଚାଲିଗଲା ସୁଚି । ଦୁଇଜଣ ଛାତ୍ରୀ ମହମବତୀ ଜାଳି କ'ଣ କଥା ହେଉଥିଲେ ତା' କାନରେ କେବଳ ପଦିଏ କଥା ପଡ଼ିଲା-"ଯିଏ ଆଜି ସୁଚି ମ୍ୟାଡ଼ାମ୍‌ଙ୍କ ପାଖକୁ ଆସିଥିଲେ ସେ ତାଙ୍କର କ'ଣ ହେବେ ?" ଶୁଣୁଥିବା ଛାତ୍ରୀ ଜଣଙ୍କ କିଛି ଉତ୍ତର ଦେବା ପୂର୍ବରୁ ଲାଇଟ୍ ଚାଲି ଆସିଲା, ମ୍ୟାଡ଼ମ୍ ଙ୍କୁ ଦୁଆରମୁହଁରେ ଦେଖି ଦୁଇଜଣ ଯାକ ଟିକିଏ ଅପ୍ରତିଭ ହୋଇପଡ଼ିଲେ । ସୁଚି ଭିତରକୁ ପଶିଯାଇ ତାଙ୍କୁ ପଚାରିଲା-କ'ଣ ସବୁ ପଡ଼ାପଢ଼ି ଚାଲିଛିନା ବସି ଗପୁଛ ? ତର ତର ହୋଇ ଜଣେ ନୋଟ୍ ଖାତାଟିଏ ଖୋଲାଇ ଦେଇ ପଚାରିଲା, ମ୍ୟାଡ଼ାମ୍ ରେବତୀ ଗଳ୍ପରେ ରେବତୀର ଆବେଗ ପ୍ରତି ବାସୁଦେବର ପ୍ରତିକ୍ରିୟା କ'ଣ ? ସୁଚି ଜାଣେ ସେମାନେ କେବଳ ତାଙ୍କର ପୂର୍ବ କଥାବାର୍ତ୍ତା ଜନୀତ ଭୟ ପାଇଁ ଏ ପ୍ରଶ୍ନଟି ପଚାରି ଦେଇଅଛନ୍ତି । ତଥାପି ଚିନ୍ତାକଲା । ମାତ୍ର କୌଣସି ସନ୍ତୋଷଜନକ ଉତ୍ତର ପାଇଲାନି । ପରେ ଚିନ୍ତାକରି କହିବ ବୋଲି କହିଦେଇ ସେ ଠାରୁ ଚାଲି ଆସିଲା ।

ହଷ୍ଟେଲ ପୂଝାରୀ ଡ଼ାକିଲା-ମ୍ୟାଡ଼ମ୍ ଖାଇବେ ଆସନ୍ତୁ । ତାକୁ ଦେହ ଭଲ ନାହିଁ କହି ଦେଇ ନିଜ ରୁମ୍‌କୁ ଚାଲିଗଲା ସୁଚି । ରୁମ୍‌ର ଲାଇଟ୍ ଅଫ୍‌କରି ଦେଇ ଜିରୋ ପାୱାର ବଲବ୍ ଜଳାଇଲା, ଟକିଆଟେ କାଛ କଡ଼କୁ ନେଇ ଆଉଜି ବସି ଚିନ୍ତା କଲା-ସତରେ ରେବତୀର ଆବେଗ ପ୍ରତି ବାସୁଦେବର ମାନସିକ ପ୍ରତିକ୍ରିୟା କ'ଣ ? କ'ଣ-କ'ଣ-କ'ଣ ? ଏ ପ୍ରଶ୍ନଟି ବାରମ୍ବାର ମନଭିତରେ ଉଚ୍ଚାରିତ ହେଉଥିଲେ ମଧ୍ୟ କୌଣସି ଉତ୍ତର ଆସୁନ ଥିଲା ।କେବଳ କାନ ପାଖରେ ଶୁଭୁଥିଲା ତା'ର ପହଞ୍ଚିବା ପୂର୍ବରୁ ଛାତ୍ରୀ ଦୁଇଜଣଙ୍କର କଥାବାର୍ତ୍ତା -ଆଜି ଯିଏ ମ୍ୟାଡ଼ାମ୍‌ଙ୍କୁ ଭେଟିବାକୁ ଆସିଥିଲେ ସେ ମ୍ୟାଡ଼ାମ୍‌ଙ୍କର କ'ଣ ହେବେ ?

ତମେ ମୋର କ'ଣ ହେବ ସୁଜିତ୍ ? ମୋର ଆବେଗ ପ୍ରତି ତମର ମାନସିକ ପ୍ରତିକ୍ରିୟା କ'ଣ ? ତୁମେ ମୋ ପ୍ରଶ୍ନର ଉତ୍ତର ଦିଅ ସୁଜିତ୍ ତେବେ ଯାଇ ମୁଁ ତାଙ୍କ ପ୍ରଶ୍ନର ଉତ୍ତର ଦେଇ ପାରିବି । ଆଜିତ ତମେ ମୋତେ ଏକ ଅପରିପ୍ରକାଶ ଆବେଗର ମଝି ଦରିଆରେ ଗୋଟେ ଭଙ୍ଗା ନୌକାରେ ବସାଇ ଦେଇ ଚାଲିଗଲ । କି ଭରସା ଅଛି ଯେ ମୁଁ କୂଳ ଛୁଇଁବି କୁହ ? ମୁଁ ତ ଏଇନେ ଗୋଟିଏ ଅନ୍ତଃସଲିଳା ଫଲ୍‌ଗୁ । କେତେ ଆବେଗରେ ଚାହୁଁଛି ସାଗରରେ ଥରେ ମିଶିବାକୁ ତମେ ଜାଣ ? ମୋ ନିଜ ପ୍ରଶ୍ନତ ମୋ ନିଜକୁ ଅବୁଝା, ମୁଁ କିପରି ବାସୁଦେବର ପ୍ରତିକ୍ରିୟାକୁ ବୁଝିବି ? ତମେ ଯଦି ଏଇନେ ମୋ ପାଖରେ ଥାଆନ୍ତ ମୁଁ ବିତମକୁ ଏହି ପ୍ରଶ୍ନ ପଚାରି ଥାଆନ୍ତି-ତୁମେ ମୋର କ'ଣ ହେବ ସୁଜିତ୍ ? ତମେ ମୋର କ'ଣ ହେବ .....?

# ଦାଉ

ଡଙ୍ଗା ଯାଇ ମଝି ନଈରେ ହୋଇଥାଏ-କୂଳରୁ ଡାକ ଶୁଭିଲା ନଟିଆ ଘାଟ ଫେରା ସାଆନ୍ତେ ଆସୁଛନ୍ତି । ନଟିଆ କାନ ପାରି ଆଉଥରେ ଶୁଣିଲା-ସାଆନ୍ତଙ୍କ ବାରିକ ଡାକୁଥାଏ ଡଙ୍ଗା ଫେରା ସାଆନ୍ତେ ଆସୁଛନ୍ତି । ଏ ପଟ କୂଳକୁ ଡଙ୍ଗାର ମଙ୍ଗ ମୋଡିଲା ନଟିଆ । ଡଙ୍ଗାରେ ବସି ଥିବା ସବୁ ଲୋକ ନୀରବ । ମୁଁ ବାପାଙ୍କୁ କହିଲି ମୋର ବୃତ୍ତି ପରୀକ୍ଷା ଡେରି ହୋଇଯିବ । ବାପା କେବଳ କହିଲେ-କ'ଣ କରିବା ସାଆନ୍ତ ଆସୁଛନ୍ତି ଯେ ।

ଡଙ୍ଗା ଫେରିଲା କୂଳକୁ । ନୀରବରେ ଲୋକମାନେ ଓହ୍ଲାଇଯାଇ ଚୌଧୁରୀ ସାଆନ୍ତଙ୍କୁ ଅଣ୍ଟାଭାଂଗି ଓଳଗି ହେଲେ । ମୋର ବାପା ବି । ମୁଁ ଡଙ୍ଗା ମଙ୍ଗପାଖରେ ଗୋଟିଏ କୋଣରେ ଠିଆ ହୋଇଥାଏ । ସାଆନ୍ତଙ୍କ ଚୌଦୋଳା ଉଠିଲା ଡଙ୍ଗା ଉପରକୁ । ଡଙ୍ଗାରେ ମୋତେ ଛଡ଼ା ହୋଇଥିବାର ଦେଖି ସେ ଏତେଭୟଙ୍କର ଚାହାଣୀଟାଏ ଦେଲେ ଯେ ହୁଏତ କିଛି ଅଘଟଣ ଘଟିପାରେ ଭାବି ମୋ ବାପା ଅତର୍ଛା ଡାକ ପକାଇଲେ- ଆରେ ତୁ ଓହ୍ଲାଇ ନାହୁଁକି ? ସାଆନ୍ତ ପରାଯିବେ, ସାଆନ୍ତଙ୍କୁ ଓଳଗି ହୋଇ ଓହ୍ଲା । ଆରେ ଓହ୍ଲା ଜଲ୍‌ଦି ।

ମୁଁ ସାଆନ୍ତଙ୍କୁ ଓଳଗି ହେଲି, ବାପାଙ୍କ ଭୟରେ ମାତ୍ର ଓହ୍ଲାଇଲା ବେଳେ ବାପାଙ୍କୁ ପ୍ରଶ୍ନ କଲି ମୋର ପରୀକ୍ଷାରେ ପହଞ୍ଚିବା ଡେରି ହୋଇଯିବ ଯେ ?

ତୁ ଆଗେ ଓହ୍ଲାଇଆ, ପରୀକ୍ଷା କଥା ପରେ ।

କିରେ ପାଣୁଆ ତୋ ପୁଅକି ? କି ପରୀକ୍ଷା କଥା କହୁଛି ?

କ'ଣ ଆଜ୍ଞା ବୁରୁଡି ପରୀକ୍ଷା କଥା କହୁଛି । ମୁଁ କ'ଣ ଜାଣେ ସେକଥା ।

ହୁଁ, ପରୀକ୍ଷା । କାମଦାମ ଶିଖା । କାମଦାମ ଆଉ କାଇଦା କଟକଣା ଶିଖା । ହାତର ଚାରିଆଙ୍ଗୁଠିକୁ ସାମାନ୍ୟ ହଲାଇ ଡ଼ଙ୍ଗା ଚଲାଇବାକୁ ନିର୍ଦ୍ଦେଶ ଦେଲେ ।

ଢ଼ଙ୍ଗା ସେପଟରେ ଲାଗିବା ପରେ ନିର୍ଦ୍ଦେଶ ଦେଲେ - ମୁଁ କଚେରୀରୁ ଫେରିବା ଯାଏ ଢ଼ଙ୍ଗା ସେପଟକୁ ଯିବନି ।

ଢ଼ଙ୍ଗା ଆଉ ଏପଟକୁ ଆସିଲାନି । ମୋର ପରୀକ୍ଷା ଦେବା ବନ୍ଦ ହେଲା ସେ ବୟସରେ ବି ମୁଁ ଭିତରେ ଭିତରେ କ୍ରୋଧରେ ଜଳି ଉଠୁଥିଲି ଅଥଚ ମୁଁ ଜାଣୁଥିଲି ମୋ କ୍ରୋଧର କିଛି ମୂଲ୍ୟ ନାହିଁ ପାହାଡ଼କୁ ଠେକା ପକାଇବା ପରି । ସାଆନ୍ତଙ୍କ ନାଆଁରେ ଆମ ଖଣ୍ଡମଣ୍ଡଳ ସନ୍ତସ୍ତ । ଗର୍ଭିଣୀ ଗାଈବି ବାଟଭାଙ୍ଗି ଚାଲିଯାଏ ସାଆନ୍ତକୁ । ସାଆନ୍ତଙ୍କ ଦାଣ୍ଡରେ ଜୋତା ଛତା ମାଡ଼ି ଯିବା ମନା । ଭିତରେ ଭିତରେ ଅସନ୍ତୋଷର ଗୁଞ୍ଜରଣ ଥିଲେ ବି କେହି କିଛି କରି ପାରନ୍ତି ନାହିଁ ।

କିଏ ବା କ'ଣ କରିବ-ଅର୍ଥବଳ, ବାହୁବଳ ଓ କୁଟଚକ୍ରାନ୍ତ କରି ସେ ଗାଁ ଗୋଟାକୁ ଆଙ୍ଗୁଠି ଅଗରେ ନଚାଉଥିଲେ । ତାଙ୍କ ଦ୍ୱାରା ସର୍ବସ୍ୱାନ୍ତ ହୋଇଥିବା ଲୋକମାନଙ୍କ କାହାଣୀ ଶୁଣି ସମସ୍ତେ ଥରହର ହୁଅନ୍ତି । କିଏ ବା କାହିଁକି ସାହସ କରିବ ପତଂଗ ପରି ନିଆଁ ସହିତ ଖେଳିବାକୁ ।

ସାଆନ୍ତଙ୍କ କୂଟଚକ୍ରାନ୍ତର ଜ୍ୱଳନ୍ତ ଉଦାହରଣ-ନାଭ ବେହେରା ଯିଏ ଏବେ ସଂପୂର୍ଣ୍ଣ ବାୟା ହୋଇ ବାଉଦୂଆର ବୁଲୁଛି । ଭଲ ମାଟି କାରିଗର ବୋଲି ଏ ଚାରିକୋଶରେ ଯା'ର ନାଁ ଥିଲା । ସେ କେବଳ ଯେ ହାଣ୍ଡି ମାଠିଆ ଗଢୁଥିଲା ନୁହଁ ମାଟିର ମୂର୍ତ୍ତି, ଘୋଡ଼ା, ହାତୀ, ଦୀପରୁଖା, ପିକଦାନୀ ଇତ୍ୟାଦି ଖୁବ୍ ସୁନ୍ଦର କରି ଗଢୁଥିଲା । ଥରେ ସାଆନ୍ତ କୁଆଡ଼େ ତାକୁ ବରାଦି କଲେ ଟଙ୍କାକିଆ ମୁଦ୍ରା ହଜାରେ ଗଢିବାକୁ । ସାଆନ୍ତଙ୍କ ଭୟରେ ହଁ ଭରିଦେଲା ସିନା ବିନା ଛାଞ୍ଚରେ ଟଙ୍କା ଗଢିବାର ଟେର ପାଉ ନଥାଏ ସେ । ସାଆନ୍ତ ଯାଉଣୁ ଆସୁଣୁ ପଚାରୁଥିଲେ କିରେ ନାଭା-ମୋର ହଜାରେ ଟଙ୍କା ହେଲା ?

ଚାଲିଛି, ସରିନି ଆଜ୍ଞା-ସରିଗଲେ ମୁଁ ବଳେ ଦେଇଦେଇ ଆସିବି ।

ଏମିତି ଦୁଇ ଚାରିଥର ପଚାରିବାପରେ ଦିନେ ସାଆନ୍ତ ଆସି ପହଞ୍ଚିଗଲେ ଟଙ୍କା ପାଇଁ । ବଡ ଯତ୍ନରେ ତିଆରି କରିଥିବା ଟଙ୍କାକୁ ଧରି ନାଭା ଯେତେବେଳେ ପହଞ୍ଚିଲା ସାଆନ୍ତ ଏମିତି ଠୋଠୋ ହୋଇ ହସିଲେ ଯେ ସେ ହସରେ ଯେମିତି ଆକାଶ ଫାଟି ପଡ଼ିବ । ହସ ବନ୍ଦକରି ପଚାରିଲେ-ଆରେ ଇଏ କ'ଣ ?

ଟଙ୍କା- ଟଙ୍କା ଆଜ୍ଞା ! ତୋ ମୁଣ୍ଡ ଠିକ୍ ଅଛିତ ? ସମବେତ ଗାଁ ବାଲାଙ୍କୁ ଲକ୍ଷ୍ୟକରି ପଚାରିଲେ-ତମେମାନେ ତ ଶୁଣିଥିବ ମୁଁ ନାଭାକୁ କେତେଥର ଟଙ୍କା ମାଗିଲିଣି । ଆଜି ବାଧ୍ୟରେ ତା' ଘରକୁ ଟଙ୍କା ପାଇଁ ଆସିଥିବାରୁ ସେ ମୋତେ ମାଟି ଟଙ୍କା ଦେଉଛି । ଶୁଣିଛ ନା ନାହିଁ ମୁଁ ଟଙ୍କା ମାଗିବାର ?

ସମବେତ ଗାଁ ବାଲାଙ୍କ ଭିତରୁ କିଛି ଥିବେ ନୀରବ ଆଉ କିଛି ସାଆନ୍ତଙ୍କ ପାଖଲୋକ ହେବାର ଆଶାରେ କହିବେ ହଁ ଆଜ୍ଞା ଆପଣ ଟଙ୍କା ମାଗିଥିବା କଥା ଆମେ ବହୁବାର ଶୁଣିଛୁ ।

ଟଙ୍କା କେଉଁଠି ମାଟିରେ ତିଆରି ହୁଏ ଦେଖିଛ ? ଗୋଟିଏ ଥଇାଳିଆ ଦୃଷ୍ଟି ଓ ହସଟିଏ ଫିଙ୍ଗି ଦେଇ କହିବେ ଟଙ୍କା ବାହାର କର ଟଙ୍କା । ଏ ଫିସାଦ କାହିଁକି, ତୋ ମୁଣ୍ଡ ବୋଧେ ଖରାପ ହୋଇଗଲାଣି ।

ହଜାରେ ଟଙ୍କା ନାଭା ପାଇଁ ଥିଲା ସେତେବେଳେ ହିମାଳୟ ପରିମାଣ ସଦୃଶ୍ୟ । ତିନି ତୁଣ୍ଡରେ ଛେଳି କୁକୁର ନ୍ୟାୟରେ ପ୍ରମାଣ ହୋଇଯିବ ଯେ ନାଭା ସାଆନ୍ତଙ୍କ ଠାରୁ ଟଙ୍କା ନେଇଥିଲା, ଅଥଚ ଏବେ ଟଙ୍କା ନଶୁଝି ପାରିବାରୁ ପାଗଳର ଅଭିନୟ କରି ମାଟିରେ ଟଙ୍କା ଗଢ଼ି ଦେଖାଉଛି । ଟଙ୍କା ନଦେଇ ପାରିବାରୁ ତାର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ସାଆନ୍ତ ନେଇଯିବା ପରେ ନାଭା ସତକୁ ସତ ପାଲଟି ଗଲା ପାଗଳ । ସେବେଠାରୁ ସେ ଗଢ଼ିଥିବା ମାଟିର ଟଙ୍କାକୁ ଧରି ବୁଲୁଛି ଏ ଗାଁରୁ ସେ ଗାଁ ।

ରାଧିନାନୀର ନିର୍ବଂଶ ଡ଼ିଅଟିକୁ ନେବାର ଚକ୍ରାନ୍ତରେ ତାକୁ ବିଟପୀର ମାଳା ପିନ୍ଧାଇ ଏ ଗାଁରୁ ଯେମିତି ଲଜ୍ଜ୍ୟାକର ଭାବରେ ବାସନ୍ଦ କରି ବିଦା କରାଗଲା ତାହା ଆଜି ମଧ୍ୟ ଲୋକେ ଭୂଲି ପାରିନାହାନ୍ତି ।

ବଢ଼ିପାଣିର ଭରା ନଈରେ କାତ ନ ପାଇବାରୁ ଘାଟିଆ ନଟିଆ ଥରେ ଆହୁଲା ମାରିଲା । ସାଆନ୍ତ ବସିଥିଲେ ଚଉଦୋଳା ଉପରେ, ଆହୁଲାରୁ ଛିଟିକି ଆସି-ପଟୁପଣି ପଡ଼ିଗଲା ତାଙ୍କ ଶାନ୍ତିପୁରୀ ଧୋତି ଉପରେ । ସାଆନ୍ତ ରାଗିକରି ଅଗ୍ନିଶର୍ମା ହେଲେ, ଭୟରେ ଥରୁଥାଏ ଘାଟିଆ ।ପଟୁ ପାଣିର ଦାଗ ଧୋତୀ ପିନ୍ଧି ସମୁଦି ଘରକୁ କେମିତି ଅବା ଆଉଯିବେ-ନିର୍ଦ୍ଦେଶ ଦେଲେ ଡ଼ଙ୍ଗାଫେରାଇବାକୁ । କୂଳରେ ପହଞ୍ଚି ଘାଟିଆକୁ କହିଲେ ଚଉପାଢ଼ୀ ରେଯାଇ ଦେଖା କରିବାକୁ । ସେ ପହଞ୍ଚିବା ପରେ ଚଉପାଢୀର ମଝି ଖୁଣ୍ଟରେ ତାକୁ ବାନ୍ଧି ଚମଡ଼ା ଚାବୁକ୍‌ରେ ପିଟି ପିଟି ହାତ ଥକିଯିବା ପରେ ତାକୁ

ଛାଡ଼ିଥିଲେ, ସେମିତି ଦୃଶ୍ୟ ଦେଖି ଗାଁ ବାଲା କେହି ମୁହଁ ଖୋଲିବାତ ଦୂରର କଥା ନଟିଆକୁ ସମବେଦନା ଟିକେ ଜଣାଇ ବାକୁ ମଧ୍ୟ ସାହସ କରିନଥିଲେ ।

ମୁଁ ଏସବୁ କଥା ଚିନ୍ତା କରୁ କରୁ ନଈକୂଳରେ ବସି ରହିଥାଏ । ଘାଟ ପାରିହେବାକୁ ଥିବା ଅନ୍ୟ ଲୋକମାନେ ଯେତେବେଳେ ଜାଣିଲେ ଡଙ୍ଗା ଆଉ ଏପଟକୁ ଆସିବ ନାହିଁ ବିନା ପ୍ରତିବାଦରେ ଯେଝା ବାଟରେ ଯିଏ ଚାଲିଗଲେ, ମୋ ବାପା ବି ମୋତେ କହିଲେ ଘରକୁ ଫେରିଚାଲ-ଆଉ ଏଠି ବସି ଲାଭ କଣ । ତମେ ଯାଅ ମୁଁ ପରେ ଯାଉଛି ବୋଲି କହିଦେଇ ମୁଁ ବସିରହିଥାଏ । କିଛି ସମୟ ପରେ ନଟିଆର ପୁଅ ଗୋପାଳ ପହଞ୍ଚିଲା ତା' ବାପା ପାଇଁ ଖାଇବାକୁ ଧରି । କୂଳରେ ପହଞ୍ଚି ବାପାକୁ ଡାକ ପକାଇଲା-ବାଆ, ଏପଟକୁ ଆସ ଖାଇଦେଇ ଯିବ ।

ତୁ ଘରକୁ ଯାଆ-ମୁଁ ସନ୍ଧ୍ୟାରେ ଘରକୁ ଗଲେ ଖାଇବି, ସେପଟୁ ଜବାବ୍ ଦେଲା ନଟିଆ ।

କାହିଁକି ?

ତୁ ଯାଆ- ସାଆନ୍ତ କଚେରୀ ଯାଇଛନ୍ତି, ସେ ଆସିଲେ ମୁଁ ଯିବି ।

ସାଆନ୍ତ କ'ଣ ଏବେ ଫେରିବେ- ତମେ ଆସି ଖାଇଦେଇ ଯାଉନ ।

ଗୋପାଳ ପାଟିରେ ହାତକୁ ଚୁଙ୍ଗା ପରି କରି ଚିଲ୍ଲାଇ କହୁଥାଏ । ମୁଁ ତା'ର ବ୍ୟସ୍ତତା ଦେଖି କହିଲି-ତୋ' ବାପା ଏବେ ଆସି ପାରିବ ନାହିଁ ।

କାହିଁକି ?

ସାଆନ୍ତଙ୍କ ନିର୍ଦ୍ଦେଶ ।

ଗୋପାଳ ଧିରେ ଧିରେ ଆସି ମୋ ପାଖରେ ନଥି କରି ବସିପଡ଼ି କହିଲା ସାଆନ୍ତ କେତେବେଳେ ଫେରିବେ ?

କିଏ ଜାଣେ - ।

ବାଆ ମୋର ସକାଳୁ କିଛି ଖାଇନି । ନାଲି ଚା ଟୋପେ ପିଇ କୁଆ କାଆ କଲା ବେଳୁ ଆସିଛି ।

କ'ଣ ଆଉ କରାଯିବ-ସାଆନ୍ତତ କହିଗଲେ ସେ ନ ଫେରିବା ଯାଏ ଡ଼ଙ୍ଗା ଆଉ ଏପଟକୁ ଆସିବ ନାହିଁ ।

ତୁ କେମିତି ଜାଣିଲୁ ଏସବୁ ?

ମୁଁ ପରୀକ୍ଷା ଦେବାକୁ ଯାଉଥିଲି- ସାଆନ୍ତ ଆସିବାରୁ ଡଙ୍ଗାରୁ ଓହ୍ଲାଇବାକୁ ପଡ଼ିଲା, ଶେଷରେ ପରୀକ୍ଷା ବି ଦେଇ ହେଲାନି ।

କିଛି ସମୟ ଗୁମ୍ ହୋଇ ବସିରହିବା ପରେ ସ୍ୱଗତୋକ୍ତି କଲା ପରି ଗୋପାଳ ପାଟିରୁ ବାହାରି ପଡ଼ିଲା- ପ୍ରତିଶୋଧ ନେବି ।

ଗୋପାଳ ମୁହଁରେ ସେ ଶବ୍ଦଟି ମୋତେ ଆଶ୍ଚର୍ଯ୍ୟ ଲାଗିଥିଲେ ହେଁ ମୁଁ ତାକୁ ପ୍ରଶ୍ନ କଲି- ପାରିବୁ ?

ମୁଁ ତ ପାରନ୍ତି- ହେଲେ ବାଆର ମୁହଁକୁ ଚାହିଁ ସବୁ ଯାଉଛି । ମୁଁ କ'ଣ କେବେ ଭୂଲି ପାରିବି ସାଆନ୍ତଙ୍କ ଚଉପାଢ଼ୀରେ ମୋ ବାଆ ଉପରେ ପଡୁଥିବା ଚାବୁକ୍‌ର ଦୃଶ୍ୟ ? ତାଙ୍କର ସେ ସମୟର ଆକୁଳ ଚିତ୍‌କାର ଏବେ ବି ମୋ କାନ ଚାରିପଟେ ଶବ୍ଦର ଭଉଁରୀ କାଟୁଛି । ବେଳେ ବେଳେ ସେଇ ଦୃଶ୍ୟ ମୋ ଭିତରେ ଏକ ତୀବ୍ର ଉତ୍ତେଜନା ଭରିଦିଏ । ଭାବେ ବୁଢ଼ାକୁ ମର୍ଡ଼ର କରି ଦେବି, ଜେଲ୍ ଗଲେ ପଛେ ଯିବି । ହେଲେ ବାଆର କଥା ଭାବିଲେ ପୁଣି ଶାନ୍ତ ହୋଇଯାଏ ।

ସାଆନ୍ତଙ୍କ ଉପରେ ପ୍ରତିଶୋଧ ନେବା କ'ଣ ଏତେ ସହଜ ? ତାଙ୍କ ପାଖରେ ଅର୍ଥବଳ, ବାହୁବଳ ସବୁଅଛି ।

ଥାଉ-ଏମିତି ଏକ ଅସହାୟ ମୁହୂର୍ତ୍ତ ଆସିବ ଏସବୁ କିଛି କାମରେ ଆସିବନି ।

କେମିତି ଆସିବ ସେ ମୁହୂର୍ତ୍ତ ?

ନା-ତୁ ପିଲାଲୋକ, ତୋତେ ଏସବୁ ବିଷୟରେ କହିବା ଠିକ୍ ହେବନି । ତେବେ ମନେରଖ ମୁଁ ଦିନେନା ଦିନେ ପ୍ରତିଶୋଧ ନେବି ।

ମୁଁ ଭାବିପାରୁ ନଥାଏ ଗୋପାଳ କେମିତି ସାଆନ୍ତଙ୍କ ଉପରେ ପ୍ରତିଶୋଧ ନେବ ବୋଲି । ତଥାପି ମୁଁ ମନେ ମନେ ଖୁସି ହୋଇ ଭାବୁଥାଏ ନିଅନ୍ତା କି ଏମିତି ଏକ ପ୍ରତିଶୋଧ ଯାହା ବୁଢ଼ା ସବୁଦିନ ପାଇଁ ମନରେ ରଖନ୍ତା ।

ଧିରେ ଧିରେ ପ୍ରତିଶୋଧ ନେବାର ଉଷ୍ମ ମନୋଭାବ ମୋ ଭିତରେ କମି କମି ଗଲା । ପାଠ ପଢ଼ାରେ ଡ଼ୋରୀ ବାନ୍ଧି ବାପାଙ୍କୁ ଚାଷରେ ସାହାଯ୍ୟ କରୁକରୁ ପେଟ ପାଟଣାର ଚିନ୍ତାରେ ବ୍ୟସ୍ତ ରହିଲି । ଏହାଭିତରେ ସାଆନ୍ତଙ୍କ ଅନ୍ୟାୟର ଛୋଟବଡ଼ ଘଟଣା ଯେ ଘଟୁ ନଥିଲା ସେକଥା ନୁହେଁ । ମାତ୍ର ନିଜ ଚିନ୍ତା ଏତେ ମାତ୍ରାରେ ଆଶକ୍ତ କରି ରଖୁଥିଲା ଯେ ଏକଥାରେ କୌଣସି ପ୍ରତିକ୍ରିୟା ପ୍ରକାଶ କରିବାର ଚିନ୍ତା ମନରେ ଦାନା ଧରୁନଥିଲା ।

ନଟିଆର ବୃଦ୍ଧାବସ୍ଥା ଆସି ଯାଇଥିବାରୁ ଗୋପାଳ ମଧ୍ୟ ଘାଟ ସମ୍ଭାଳିବାର ଦାୟୀତ୍ୱ ନେଇଥିଲା । ଥରେ ସାଆଂତକ କଚେରୀ ଫେରିବା ବାଟକୁ ଅପେକ୍ଷା କରି ଗୋପାଳ ଗଛମୂଳରେ ଗାମୁଛା ପାରି ଶୋଇଥାଏ । ସୁଲୁ ସୁଲିଆ ପବନରେ ତା'ର ଆଖିକୁ ନିଦ ଲାଗିଯାଇଥିଲା, ଏହି ସମୟରେ ସାଆଂତ ଆସି ପହଞ୍ଚିଲେ । ସାଆଂତଙ୍କ ଟହଲିଆ ଗୋପାଳକୁ ଦୁଇଡାକ ମାରିଲା । ନିଦ ଲାଗିଯାଇ ଥିବାରୁ ଗୋପାଳ ଶୁଣି ନପାରିବାରୁ ସାଆଂତଙ୍କୁ ଲାଗିଲା ତାଙ୍କ ସମ୍ମାନ କ୍ଷୁର୍ଣ୍ଣ ହେଉଛି ବୋଲି । ସେ ସଙ୍ଗେ ସଙ୍ଗେ ତା' ପାଖକୁ ଯାଇ ତାଙ୍କ ମୁଗୁରା ଯୋତାର ଅଗରେ ତା' ପେଟକୁ ପକାଇଲେ ଗୋଇଠାଏ । ନିଦରୁ ବିଡ଼ି ବିଡ଼େଇ ଉଠିଲା ଗୋପାଳ । ସାଆନ୍ତଙ୍କୁ ସାମ୍ନାରେ ଦେଖି ପେଟର ଯନ୍ତ୍ରଣା କଥା ଭୂଲି କାତ ଧରିଲା ।

ତଙ୍ଗାରେ ବସୁ ବସୁ ସାଆନ୍ତ କହିଲେ-ନବାବର ନାତି ଭଳି ନିଦରେ ଶୋଇ ଯାଇଛୁ ତ ?

ସାଆନ୍ତଙ୍କ ସହ ଥିବା ଟହଳିଆ କଥାରେ ହୁଆ ଦେଇ କହିଲା-ସାଆନ୍ତ ଫେରିବାର ଅଛି ବୋଲିତ ଜାଣିଛୁ, ତୋତେ ନିଦ ଲାଗିଗଲା କେମିତି ?

ଗୋପାଳ ରାଗରେ ରକ୍ତ ଚାଉଳ ଚୋବାଇ ହେଉ ଥିଲେ ମଧ୍ୟ କିଛି କହି ପାରିଲା ନାହିଁ । ସେ ଭଲ ଭାବରେ ଜାଣୁଥିଲା ଏବେ କିଛି କହିବା ଅର୍ଥ ଅଧିକ ମାଡ଼ଗାଳି ଖାଇ ବେଇଜ୍ଜତ ହେବା । ସେ ମନେ ମନେ ଚିନ୍ତା କରୁଥିଲା ଗୋଟେ ପ୍ରତିଶୋଧର ଉପାୟ ମାତ୍ର ପରକ୍ଷଣରେ ଦବି ଯାଉଥିଲା - ଯଦି ନେଇ ନହେଲା ତେବେ...? ପ୍ରତିଶୋଧର ଉପାୟ, ତାର ଭୂମିକା ଓ ଫଳାଫଳ ବିଷୟରେ ବହୁ ଚିନ୍ତା କରି ତାକୁ ଲାଗୁଥିଲା ସେ ଯେମିତି ଚିନ୍ତାର ଚକ୍ରବ୍ୟୁହ ମଧ୍ୟରେ ଫେରିବାର ବାଟ ପାଉନାହିଁ ।

ଡଙ୍ଗା କୂଳରେ ଲାଗିଲା ପରେ ସାଆନ୍ତ ଚାଲିଗଲେ । ଲଙ୍ଗରଟିକୁ କୂଳରେ ପୋତି ଦେଇ ସେ ନଈକୂଳରୁ ଉପରକୁ ଉଠୁଛି ଘରକୁ ଯିବାପାଇଁ ମୋ ସହ ଦେଖା ହେଲା । ତା'ର ଶୁଖିଲା ମୁହଁ ଦେଖି ମୁଁ ପଚାରିଲି-କ'ଣ ହେଲାକି ଗୋପାଳ ଭାଇ ?

ନାଇଁ-କିଛିନାହିଁ ।

ନା-କିଛି ଗୋଟେ ହୋଇଛି, ନଚେତ୍ ତୋ ମୁହଁ ଏମିତି କାହିଁକି ଦେଖା ଯାଉଥାଆନ୍ତା ?

ମଲା ମଣିଷଙ୍କର ମୁହଁ ଆଉ କେମିତି ଦେଖା ଯାଆନ୍ତା ?

ମଲା ମଣିଷ ! କିଏ-କିଏ ମଲାମଣିଷ ?

ମୁଁ-ତୁ-ଆମେ ସମସ୍ତେ ।

ଏମିତି ନିତି ନିତି ମାଡ ଭୟରେ, ଅତ୍ୟାଚାରର ଡ଼ରରେ ଚୁପ୍‌ରହି ଅନ୍ୟାୟକୁ ଯେଉଁମାନେ ବରଦାସ୍ତ କରୁଛନ୍ତି,. ଓଠାଚିପି ଲୁହକୁ ଅଟକାଉଛନ୍ତି ସେମାନେ ମଲା ମଣିଷ ନୁହେଁ ଆଉ କ'ଣ ଜିଅନ୍ତା ?

ଇଏତ ଆମର ଭାଗ୍ୟ - ଆମେ ଏଥିପାଇଁ କିଛି କରିପାରିବାନି ।

ଥୁଃ-ସେ ଭାଗ୍ୟ ଉପରେ । ଏମିତି ଭାଗ୍ୟ ନେଇ ଗହେଟା ଜୀବନ ଜିଇଁବାର କି ମାନେ ? ଆଉ ନୁହଁ ଏବେ ଆଉ କୌଣସି ପ୍ଲାନ କରିବା ନୁହେଁ ଅଚାନକ ପ୍ରତିଶୋଧ ନେବି । କାରଣ ପ୍ଲାନ କରିବା ଭିତରେ ଆଗ ପଛ ଦୁନିଆଁ ଚିନ୍ତା ମୁଣ୍ଡ ଭିତରକୁ ଆସି ସବୁ ଗଣ୍ଡଗୋଳ କରିଦେଉଛି-ତୁ ଦେଖିବୁ କୌଣସି ନିର୍ଦ୍ଦିଷ୍ଟ ପ୍ଲାନ ନକରି ମଧ ମୁଁ କେମିତି ପ୍ରତିଶୋଧ ନେବି । ପାରିବୁ ଯଦି ତୁ ମୋର ସାଥି ହ ।

ଗୋପାଳ ଭାଇ ଚାଲିଗଲା-ମୁଁ ଭାବୁଥିଲି ଆଜି ବୋଧେ ଜମିଦାରଙ୍କର କିଛି ନୂଆ ଅତ୍ୟାଚାର ତା'ଉପରେ ହୋଇଥିବ, ସେଥିପାଇଁ ସେ ସେମିତି ଉତ୍ତେଜିତ ହୋଇ ପଡ଼ିଛି । ପେଟର ଉତ୍ତାପ ପାଖରେ ଏସବୁ ଉତ୍ତାପ ବହୁତ ନଗଣ୍ୟ । ସେ ଏବେ ଯାହା ଭାବୁଛି କାଲି ସକାଳକୁ ଭୋକର ଦାଉରେ ସେ ସବୁଭୂଲିଯିବ । ଭୋକତ ଆମର ପୁଞ୍ଜି,ଅତ୍ୟାଚାର,ମାଡ଼ଗାଳି ସହିବା ବ୍ୟବସାୟ ।ଏମିତି ପୁଞ୍ଜି ନେଇ ବ୍ୟବସାୟ କରିବା ମଧଆମର ବିହିତ ଭାଗ୍ୟ ।

ଏହାପରେ କିଛିଦିନ ଯାଏ ଗୋପାଳ ଭାଇ ସହ ମୋର ଦେଖା ସାକ୍ଷାତ ହୋଇ ନଥିଲା । ଦେଖା ସାକ୍ଷାତ ନହେବାର କାରଣ-ଅବାରିତ ଦୀର୍ଘଦିନ ଝଡ଼ି ବର୍ଷା ପାଇଁ ମୁଁ ନଈକୂଳ ଆଡ଼େ ଯାଇପାରିନଥାଏ, ବର୍ଷା ଯୋଗୁଁ ଚାଷବାସ ବି ବନ୍ଦ ଥାଏ ।ତେଣୁ ବର୍ଷା ସମୟରେ ଘରେ ବସି ଝୋଟରୁ ଦଉଡ଼ି ବଳିବା କି ହେଁସ ବୁଣିବା କାମ ଯାହା କରୁଥାଏ, ସାତ ଆଠ ଦିନର ଝଡ଼ ବର୍ଷା ପରେ ସୂର୍ଯ୍ୟ ଟିକିଏ ଦେଖା ଦେଲାରୁ ବିଲରୁ ବିଲକୁ ହଳ ନେବା ଉଦ୍ଦେଶ୍ୟରେ ବଳଦଙ୍କୁ କୁଣ୍ଡା ତୋରାଣି ଦେଉଛି ଭଗିଆ ସାଆନ୍ତ କହିଲା-କିରେ ହଳସଜାଡୁଛୁକି ? କାଲି ରାତିରେ ପାଆ ବଡ଼ି ପାଣି ପାଟଛୁଇଁଲା - ଆଉ ଟିକେ ପରେ ତନ୍ତିଘାଇରେ ପାଣି ଚାଲିବ । ତୁ ଏଥିରେ କ'ଣ ନା ହଳ ନେଇ ବିଲକୁ ଯିବୁ । ଅସମ୍ଭବ ପ୍ରକାରର ବନ୍ୟା ଆସୁଛି ଘଣ୍ଟାକୁ ହାତେ ପାଣି ବଢୁଛି । ଯାଉନୁ ନଈ ଘାଟକୁ ଦେଖିବୁ ଲୋକ କେମିତି ଭିଡ଼ ଜମାଇ ନଈବଢ଼ି ଦେଖୁଛନ୍ତି ।

ହଳ ନେବା ବନ୍ଦ କରି ନଈକୂଳ ଆଡ଼େ ଗଲି,ସତକୁ ସତ ନଈ ବନ୍ଧରେ ଲୋକ ଭିଡ଼ । ସମୁଦ୍ର ଲହଡ଼ି ପରି ବନ୍ୟା ମାଡ଼ି ମାଡ଼ି ଆସୁଥାଏ । ନଈକୂଳର ଦୁଇପଟ ବନ୍ଧକୁ ପାଣି ଲାଗିସାରିଥାଏ । ଗୋପାଳ ଭାଇ ତା ଡ଼ଙ୍ଗାକୁ ନଇ ବନ୍ଧରେ ଲଗାଇ ଡଙ୍ଗାର ଘଳିଆ ମାରୁଥାଏ । ମୋତେ ଦେଖି ପଚାରିଲା କିରେ-ତୋ'ର କ'ଣ ଦେଖାନାହିଁ ?

ଦେଖୁଛୁ ତ କେମିତି ବର୍ଷା ଲାଗିରହିଥିଲା- ସେଥିରେ କ'ଣ ଘରୁ ବାହାରି ହେଉଥିଲା ଯେ

ନଈ କୂଳକୁ ଆସିଥାଆନ୍ତି ।

ହଁ- ଲାଗୁଛି ଗୋଟେ ବଡ଼ ବଢ଼ିହେବ । କମ୍ ବର୍ଷା ହୋଇଛି କି ଘ୍ଡା' ଭିତରେ । ଆଜି ରାତିରେ ମୋତେ ବୋଧେ ଡ଼ଙ୍ଗାରେ ରହିବାକୁ ପଡ଼ିପାରେ । ପାଣି କେତେ ହେଉଛି କିଏ କହିପାରିବ । ଡ଼ଙ୍ଗାରେ ଥିଲେ ସିନା ଉପରକୁ ଉଠାଇ ନଙ୍ଗର ପକାଇବି । ଆଉ ଯଦି ଏ ନଈ ବନ୍ଧରେ ଘାଇପଡ଼ିଲା ତ କଥା ସରିଲା ।

ଆମେ ଦୁଇଜଣ କଥାବାର୍ତ୍ତା ହେବା ସମୟରେ ସାଆନ୍ତଙ୍କ ବାରିକ ଆସି ଡ଼ାକିଲା -ଗୋପାଳ ଘାଟ ସଜିଲ କର ସାଆନ୍ତ ଆସୁଛନ୍ତି ।

କିଏ ଜଣେ ବାରିକକୁ ପଚାରିଲା-ଏ ଯେଉଁ ବନ୍ୟା ମାଡ଼ି ମାଡ଼ି ଆସୁଛି ସେଥିରେ ନଈ ପାରିହୋଇ ସାଆନ୍ତ ଯିବେ କୁଆଡ଼େ ?

ନଈରେ ବଢ଼ି ଆସିଲା ବୋଲି କ'ଣ କଚେରୀରେ ତାରିଖ ଗଡ଼ିଯିବ । ବଡ଼ମୁଣ୍ଡ ବଡ଼ କାରବାର । ବନ୍ୟା ଆସୁ କି ବାତ୍ୟା ଆସୁ ।

ଗୋପାଳ ଭାଇ ଡ଼ଙ୍ଗାଭିତରେ ବିଡ଼ିବିଡ଼େଇହୋଇ କହିଲା-ହୁଃ, ବଡ଼ମୁଣ୍ଡ ବଡ଼କାରବାର । କିଛି ସମୟ ଚୁପ୍ ରହି କହିଲା-ଆଜି ବୁଢ଼ାକୁ ନଈ ନୁହଁ ସମୁଦ୍ର ପାରି କରିଦେବି ।

ସମୁଦ୍ର !

ହଁ, ଭବସାଗର ପାରି କରିଦେବି ।

ମୁଁ କିଛି କହିବାକୁ ଯାଉଥିଲି, ମୋତେ ହାତରେ ଇସାରା ଦେଲା ଚୁପ୍ ରହିବାକୁ । କହିଲା ଯାଆ- ନଈ ବନ୍ଧରେ ଠିଆ ହୋଇଥାଆ ଶେଷ ଦୃଶ୍ୟ ଦେଖିବା ପର୍ଯ୍ୟନ୍ତ ।

ସାଆନ୍ତ ଆସିଲେ ଚଉଦୋଳା ପବନ ଧରି ଭରା ନଈରେ ଡ଼ଙ୍ଗା ମୋଡ଼ିବ ବୋଲି ଚଉଦୋଳାରୁ ଓହ୍ଲାଇ ଆସି ଡ଼ଙ୍ଗାର ଆଗ ମଙ୍ଗରେ ବସିଲେ । ବସି ସାରିବା ପରେ ଅନ୍ୟ ମାନଙ୍କୁ କହିଲେ ତମ

ମାନଙ୍କର କାହାରି ଆସିବା ଦରକାର ନାହିଁ । ବନ୍ୟା ଆସୁଛି, କେଉଁଠି ଘାଇ ହୋଇପାରେ, ଗାଆଁରେ ଥାଅ ।

ଚାଲୁ ଚାଲୁ କଚେରୀ ଡ଼େରି ହେଉଛି । ଡ଼ଙ୍ଗା ଛାଡ଼ିଲା କୂଳ । ଗୋପାଳ ଭାଇ ମୋ ଆଡ଼କୁ ଚାହିଁ ଥରେ ହାତ ହଲାଇଲା ।

ଆମେ ମାନେ କୂଳରେ ଥାଇ ଦେଖୁଥାଉ । ପ୍ରଖର ସୁଅରେ ଡ଼ଙ୍ଗା ବାତର ବୋଲ ମାନୁନ ଥାଏ । ଠିକ୍ ମଝି ନଈରେ କାତ ପାଇଲା ନାହିଁ ମାଟିକୁ । ଭଉଁରୀରେ ପଡ଼ି ଡ଼ଙ୍ଗା ଘୁରୁଥାଏ । ଏପଟେ ଥାଇ ଲୋକେ ଚିତ୍‌କାର କରି କହୁଥାଆନ୍ତି-ବାଆଁରୁ କାତ ପକା ମଙ୍ଗ ମୋଡ଼, ମଙ୍ଗମୋଡ଼ ଇତ୍ୟାଦି । ଏମାନଙ୍କ କଥା ଗୋପାଳ ଭାଇର କାନରେ ବାଜୁ ନଥାଏ । ମଙ୍ଗ ମୋଡ଼ିବ ବୋଲି କାତ ପଶିଗଲା ଡ଼ଙ୍ଗା ପେଟତଳେ । ସମ୍ଭାଳି ନ ପାରି ଛାଡିଦେଲା ସେ । ଭଉଁରୀ ଭିତରେ ଡ଼ଙ୍ଗା । ଚିଲ୍ଲାଉଥିଲେ ଜମିଦାର । ତାଙ୍କର ଚିଲ୍ଲାଇବାକୁ ଖାତିର ନକରି ଗୋପାଳ ଭାଇ ଖୋଲିଦେଲା ଗୋଟିଏ ପରେ ଗୋଟିଏ ଘୋଳିଆ । ଧିରେ ଧରେ ଜମିଦାରଙ୍କର ଚିଲ୍ଲାଇବାଟା ପରିଣତ ହେଲା ଅନୁରୋଧରେ । ଡ଼ଙ୍ଗାରେ ବଢୁଥାଏ ପାଣି । ଭଉଁରୀ କାଟୁଥାଏ ଭଅଁରରେ । ଅନୁରୋଧରୁ ଖସି ଆସିଲେ ସାଆନ୍ତ ନିଁବେଦନକୁ । ଡ଼ଙ୍ଗାରେ ପାଣି ବଢ଼ି ବଢ଼ି ଚାଲିଥାଏ । ନିବେଦନ ପାଲଟିଗଲାଏକ ଆର୍ତ୍ତ ମଣିଷର ଆକୁଳ କ୍ରନ୍ଦନରେ-ଆର୍ତ୍ତନାଦରେ ।

ମୁଁ ତମର ସବୁ ଅବସ୍ଥାକୁ ଦେଖିନେଲି ସାଆନ୍ତେ ।ଏବେ ନିଜକୁ ସମ୍ଭାଳ କହି ଗୋପାଳ ନଈକୁ ଡ଼େଇଁ ପଡ଼ିଲା । ତା ଡ଼େଇଁବାର ଝଟକାରେ ବୁଡ଼ିଗଲା ଡ଼ଙ୍ଗା । ପାଣିଭିତରୁ ଗୋଟେ ହାବୁକା ସହ ଉପରକୁ ଉଠିଆସିଲା ଶାନ୍ତିପୁରୀ ଚଦର ଖଣ୍ଡେ ।

ପହଁରି ପହଁରି କୂଳରେ ପହଞ୍ଚିବା ପରେ ଗୋପାଳ ଭାଇ ଥିଲା ନିରୁତ୍ତର ଅଥଚ ଗୋଟେ ବିଜୟୀ ଦର୍ପରେ ।

# ଶଠେ ଶାଠ୍ୟମ୍

ନରହରି ମୋ ସାଙ୍ଗରେ ପଢୁଥିଲା । ସେ ଯେତିକି ଭଲ ଛାତ୍ର ବୋଲି ଦାବୀ କରୁଥିଲା ଅବଶ୍ୟ ସେତିକି ଭଲ ଛାତ୍ର ନଥିଲା । କିନ୍ତୁ କେବଳ ମୁଁ ନୁହେଁ ଆମ ଶ୍ରେଣୀର ସମସ୍ତ ଛାତ୍ର ଏପରିକି ଶିକ୍ଷକମାନେ ମଧ୍ୟ ତା'ର ଇଂରାଜୀ ଜ୍ଞାନକୁ ବିଶେଷ କରି ଇଂରାଜୀ ବ୍ୟାକରଣ ଜ୍ଞାନକୁ ପ୍ରଶଂସା କରୁଥିଲେ ନେସ୍‌ଫିଲଡ୍ ଗ୍ରାମାର ବହିଟିକୁ ପୂରା ନ ହେଲେ ବି ପାଠ୍ୟକ୍ରମରେ ଥିବା ବିଷୟଗୁଡ଼ିକୁ ଭଲ ଭାବରେ ହଜମ କରି ଦେଇଥିଲା । ଏତଦ୍ ବ୍ୟତିତ ତାକୁ ଟେନ୍‌ସ ଉପରେ ଚ୍ୟାଲେଞ୍ଜ କଲାଭଳି ଆମ ଭିତରେ କେହି ନଥିଲେ । ସମୟେ ସମୟେ ସେ ଶିକ୍ଷକମାନଙ୍କୁ ମଧ୍ୟ କ୍ଲାସରେ ଅସୁବିଧାରେ ପକାଇଦିଏ ବିଭିନ୍ନ ରଢ଼ୀ ବାକ୍ୟର ଇଂରାଜୀ ଅନୁବାଦ କ'ଣ ହେବ ଯଥା-କଛା ମାରି ଲୁଗାପିନ୍ଧ, ମୋତେ ଯେତେ ମାଠିବୁ ମାଠ, ବଂଶ ନାଶ ବେଳେ ଘୋଡ଼ାମୁହଁ ପୁଅ ଇତ୍ୟାଦି ପଚାରି ଦେଇ । ଶିକ୍ଷକମାନଙ୍କର ନକହି ପାରିବାର ଅସହାୟତାକୁ ନେଇ ଆମେ ସବୁ ଭିତରେ ଭିତରେ ଆମୋଦିତ ହେଉଥିବାବେଳେ ତା ଭିତରେ କିନ୍ତୁ ବଢୁଥିଲା ତା ଜ୍ଞାନ ପାଖରେ ଅନ୍ୟକୁ ହେୟ ଭାବେ ଦେଖିବାର ଅହଂଭାବ, ଆମ ସମସ୍ତଙ୍କୁ ବେଳେ ବେଳେ କହେ ଜାଣ ମୁଁ ଭବିଷ୍ୟତରେ କେବଳ ଅଧ୍ୟାପକଟିଏ ହେବି ମାତ୍ର ଏମିତି ସେମିତି ଅଧ୍ୟାପକ ନୁହଁ-ଇଂରାଜୀ ଉପରେ ମୋତେ କ୍ଲାସରେ ଚ୍ୟାଲେଞ୍ଜ କରିବାକୁ ଯେମିତି କାହାର ସାହାସ ନହୁଏ ସେମିତିକା ଅଧ୍ୟାପକ ।

ହାଇସ୍କୁଲରେ ପଢିବା ସମୟରୁ ହିଁ ସେ ମନେ ମନେ ନିଜକୁ ଏକ ଅଧ୍ୟାପକ ବୋଲି ଭାବି ନେଇଥିଲା । କ୍ଲାସରେ କୌଣସି ସାର୍ ନଥିବା ସମୟରେ ପଚାରିଦେବ-ଟି.ଏଚ.ଇ ବେଳେ ବେଳେ 'ଦି' ବେଳେ ବେଳେ 'ଦ' କାହିଁକି ହେଉଛି ? ଆମେ କେତେକ ତା'ର ଗୁଣ ଜାଣି କହୁ ହେଉଛି ତ ହେଉଛି ଆମେ ଜାଣି କ'ଣ କରିପକାଇବା ? ଯଦି କେହି ଜାଣିବା ପାଇଁ ପଚାରିଦେଲା କାହିଁକି ହେଉଛି କହତ ତାହେଲେ ସାଙ୍ଗେ ସାଙ୍ଗେ ବିଭିନ୍ନ ଉଦାହରଣ ଦେଇ ସେ ଆରମ୍ଭ କରିଦେବ ଏକ ରିତିମତ କ୍ଲାସ । ତାକୁ ଖୁସି କରିବା ପାଇଁ ଆମେ ବେଳେ ବେଳେ କହୁ ତୁ ଯେମିତି ଗ୍ରାମାର ପଢ଼ାଇ ପାରିବୁନା' ଲକ୍ଷ୍ମୀଧର ସାର ବି ଏମିତି ପଢ଼ାଇ ପାରିବେ ନାହିଁ । ସେ ଖୁସିହୋଇ କହେ ଏମାନଙ୍କର ଅଧ୍ୟୟନ କାହିଁ ? ସେଇ ଯା'ବି.ଏ. ପଢ଼ିବା ବେଳେ ପଢ଼ିଥିଲେ ସେଇଆକୁ ଘୋରି ବାଟି ପଢ଼ାଇଛନ୍ତି । କିଛି ପଢିଲେ ସିନା ଜାଣନ୍ତେ ।

ଇଂରାଜୀରେ କଥା କହିବା ଏବଂ ଇଂରାଜୀରେ ଅଧିକରୁ ଅଧିକ ଜ୍ଞାନ ଜାଣିବା ତା'ର ଗୋଟିଏ ନିଶାରେ ପରିଣତ ହୋଇଯାଇଥିଲା ଯା' ଫଳରେ ସେ ଅନ୍ୟ କୌଣସି ବିଷୟ ପ୍ରତି ସେତେଟା ଧ୍ୟାନ କିମ୍ବା ଗୁରୁତ୍ୱ ଦେଲାନାହିଁ । ମ୍ୟାଟ୍ରିକ ପରୀକ୍ଷାର ଫଳ ବାହାରିଲା ବେଳକୁ ବାବୁ ନରହରି ସର୍ବନିମ୍ନ ନମ୍ବର ରଖି ତୃତୀୟ ଶ୍ରେଣୀରେ ପାଶକଲେ । ଏପରିକି ନିଜକୁ ଅତି ଦକ୍ଷ ବୋଲି ଭାବୁଥିବା ତା'ର ପ୍ରିୟ ବିଷୟ ଇଂରାଜୀରେ ମଧ ସେ ଆମ୍ଭମାନଙ୍କ ତୁଳନାରେ ଆଶାନୁରୂପକ ମାର୍କ ରଖିପାରି ନଥିଲା । ପରୀକ୍ଷାର ଫଳାଫଳ ଉପରେ ତା'ର ପ୍ରତିକ୍ରିୟା ଜଣାଇ କହିଲା-ପରୀକ୍ଷାରେ କ'ଣ ପ୍ରକୃତ ମାନନିର୍ଣ୍ଣୟ କରି ହେଉଛି ? ମୁଁ ମୋର ପରୀକ୍ଷା ଫଳକୁ ଗ୍ରହଣ କରୁଛି ସତ ହେଲେ ବିଶ୍ୱାସ କରୁନି । କିନ୍ତୁ ଦିନ ଆସିବ ମୁଁ ସାବ୍ୟସ୍ତ କରିଦେବି ମୋର ଜ୍ଞାନ କେତେ ।

ଇଂରାଜୀ ପ୍ରତି ଅତ୍ୟଧିକ ଆଗ୍ରହ, ଆଗ୍ରହ କହିଲେତ ଠିକ୍ ହେବନି ଇଂରାଜୀ ମାନିଆକ୍ ପାଇଁ ସେ ଆର୍ଟସ୍ ପଢିଲା । ଆଇ.ଏ. ପଢ଼ିବାର ଦୁଇବର୍ଷ ଭିତରେ କଲେଜ ଲାଇବ୍ରେରୀରେ ଥିବା ଅଧିକାଂଶ ଇଂରାଜୀ ବହିକୁ ପଢି ପକାଇଲା । ପରୀକ୍ଷା ବେଳକୁ କେବଳ ଇଂରାଜୀକୁ ଛାଡ଼ିଦେଲେ ଅନ୍ୟ ବିଷୟମାନଙ୍କ ଉପରେ ତା'ର ସମ୍ୟକ ଧାରଣା ବି ନଥିଲା । ତେଣୁ ଇଂରାଜୀର ଦୁଇଟି ପତ୍ର ପରୀକ୍ଷା ଦେଇ ସାରିବା ପରେ ସେ ପରୀକ୍ଷା ତ୍ରପକରି ଘରକୁ ଚାଲି ଆସିଲା । ଘରେ କିଛିଦିନ ଏପଟ ସେପଟ ବୁଲିଲା । ତା'ପରେ ଦିନେ ଘରେ କାହାକୁ କିଛି ନକହି କୁଆଡ଼େ ଅର୍ନ୍ତଧାନ ହେଇଗଲା । ତା'ବାପାଙ୍କର ଅଭାବ ସଂସାରରେ ତାକୁ ଖୋଜିବା ପାଇଁ ସମ୍ବଳ ନଥିଲା କିମ୍ବା ହଜିଲା ଲୋକଙ୍କୁ ଖୋଜିଲା ପରି ଦକ୍ଷତା ନଥିଲା । ଏପଟ ସେପଟ ବନ୍ଧୁବାନ୍ଧବ ଘର, ବିଦେଶରେ ଥିବା ଗାଁ ଲୋକମାନଙ୍କୁ ପଚାରା ପଚିରି କରିବା ପରେ ସେ ନିରାଶ ହୋଇ ଖୋଜିବା ବନ୍ଦ କରିଦେଲେ ।

ପାଞ୍ଚ-ସାତବର୍ଷ ପରେ ନରହରି ଗାଁକୁ ଫେରିଲା । ନିଜ ଅର୍ନ୍ତଧାନ ବିଷୟରେ ସଫେଇ ଦେଇ କହିଲା-ମୋ ଲକ୍ଷ୍ୟ ସାଧନ ପାଇଁ ମୁଁ ଏତେଦିନ ଧରି ଆତ୍ମଗୋପନ କରିଥିଲି । ମୁଁ ଭଲଭାବରେ ଜାଣିଥିଲି ଆମ ଅଭାବି ସଂସାରର ନିଅଣ୍ଟ ଭିତରେ ମୁଁ ଯାହା ହେବାକୁ ଚାହୁଁଥିଲି କେବେ ହୋଇପାରି ନଥାନ୍ତି । ତେଣୁ ଘରଠାରୁ ସାମୟିକ ଦୂରେଇ ଯାଇ ମୁଁ ମୋ ଲକ୍ଷସ୍ଥଳରେ ପହଞ୍ଚିବାକୁ ଚେଷ୍ଟାକଲି । ଏବେ ମୁଁ ମୋ ଲକ୍ଷ ହାସଲ କରିଛି । ମୋ ଜ୍ଞାନ ପାଇଁ ଉସ୍ମାନିଆ ଇଉନିଭରସିଟି ମୋତେ ସିଧା ସଳଖ ଇଂରାଜୀରେ ଏମ୍.ଏ.ପରୀକ୍ଷା ଦେବା ପାଇଁ ଅନୁମତି ଦେଲେ । ମୁଁ ସେଠାରୁ ଏମ୍.ଏ.ପାଶ୍ କରିସାରିବା ପରେ ଡ଼କ୍ଟରେଟ୍ ମଧ କରିଦେଲି । ଏବେ ଏଠାରେ କୌଣସି ଗୋଟେ କଲେଜ୍‌ରେ

ଅଧ୍ୟାପକ ହେବାପାଇଁ ଚେଷ୍ଟା କରିବି ।

ଇଂରାଜୀରେ ଏମ୍.ଏ. ଓ ପି.ଏଚ୍.ଡ଼ି.କରିଛି ବୋଲି କହୁଥିବାରୁ ଛତୁ ପରି ଖୋଲିଥିବା ନୂଆ କଲେଜ୍ ମାନଙ୍କରେ ଅଧ୍ୟାପକ ହେବା ପାଇଁ ତାକୁ ଡ଼େରି ଲାଗିଲାନାହିଁ । ସେ କଲେଜରେ ପଢ଼ାଇଲା ସତ ମାତ୍ର କୌଣସି କଲେଜରେ ଛଅମାସରୁ ଅଧିକ ସମୟ ରହିପାରିଲାନାହିଁ । ବାହାର ଇଉନିଭରସିଟିରୁ ସାର୍ଟିଫିକେଟ୍ ଆସିବାର ଡ଼େରି ହେଉଛି କହି କିଛିଦିନ ଚଳାଇନେବ ମାତ୍ର କଲେଜବାଲା ଯେତେବେଳେ ସାର୍ଟିଫିକେଟ୍ ଦେବାପାଇଁ ବାଧ କରିବେ ସେ କୌଣସି ନା କୌଣସି ଆଳ ଦେଖାଇ କଲେଜ ଛାଡ଼ିଦେବ । ଶେଷକୁ ଏପରି ହେଲା ଯେ ଆଖ ପାଖରେ କୌଣସି ନୂଆଁ କଲେଜ ନଥିଲା ଯେଉଁଠାରେ ସେ କିଛିଦିନ ପାଇଁ ଅଧ୍ୟାପକ ହୋଇନଥିଲା ।

ବାରମ୍ବାର କଲେଜ ବଦଳାଇବା ଫଳରେ ଲୋକମାନଙ୍କର ତା' ଡ଼ିଗ୍ରୀ ସଂପର୍କରେ ସନ୍ଦେହ ହେଲା । ନରହରି ଯେତେବେଳେ ଅନୁଭବ କଲା ଆଉ ଠକାଇ ଠକାଇ ବେଶିଦିନ ଚାଲି ପେବନି ସେତେବେଳେ ସେ ପୁଣିଥରେ ନିରୁଦ୍ଦିଷ୍ଟ ହୋଇଗଲା । ଆମ ଗାଁ ପାଇଁ ତା'ର ନିରୁଦ୍ଦିଷ୍ଟ ଖବର କୌଣସି ପ୍ରଭାବ ପକାଇବା ପରିବର୍ତ୍ତେ ବରଂ ଆଶ୍ୱସ୍ତ କରିଥିଲା ବହୁ ଲୋକଙ୍କୁ ।

ଅନେକ ବର୍ଷଯାଏ ନରହରିର କୌଣସି ଖବର ମୁଁ ଜାଣିନଥିଲି । ଥରେ ନରହରିକୁ ଜଣେ ମନ୍ତ୍ରୀଙ୍କ ପାଖରେ ଦେଖି ମୁଁ ଦୋ-ଦୋ ଚିହ୍ନା ହେଉଛି ମନ୍ତ୍ରୀ ମହୋଦୟ ତାକୁ ମୋ ସହିତ ଚିହ୍ନା କରାଇ ଦେବାକୁ ଯାଇ ପଚାରିଲେ ଆପଣ ଜାଣନ୍ତି ଯ୍ୱାଙ୍କୁ ? ଏ ହେଉଛନ୍ତି ବିଦେଶୀ ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ । ନରହରିକୁ ଦେଖି ମୋର ଦୋ-ଦୋ ଚିହ୍ନା ହେବାର କାରଣ ଥିଲା ତା'ର ବର୍ଦ୍ଧିତ ବପୁ ଓ ସାହେବୀୟ ଆଦବ୍‌କାଇଦା, ମନ୍ତ୍ରୀଙ୍କଠାରୁ ନାଁଟା ଶୁଣି ମୁଁ କହିଲି ଭଲ ଭାବରେ ଜାଣେ ସାର୍- ସେ ମୋର ବାଲ୍ୟ ବନ୍ଧୁ ବି ସେତେବେଳ ଯାଏ ନରହରି ମୋ ମୁହଁକୁ ଭଲ ଭାବରେ ଚାହିଁ ନଥିଲା ଏତଦ୍ ବ୍ୟତୀତ ମୋର ପୋଲିସ୍ ବିଭାଗର କ୍ୟାପଟା ବି ତାକୁ ଅସୁବିଧାରେ ପକାଇଥିଲା ମୋତେ ଚିହ୍ନିବା ପାଇଁ, ମୁଁ ଯେତେବେଳେ କ୍ୟାପ୍ କାଢ଼ି ହାଏ ନରହରି କହିଲି ସେ ଆଶ୍ଚର୍ଯ୍ୟ ଶଙ୍କିତ ହେଲା । ତା'ର ଶଂକାର କାରଣ ମୁଁ ଜାଣିଥିଲି । ମୋ ପାଖକୁ ଉଠିଆସି କରମର୍ଦ୍ଦନ ଅବସରରେ କହିଲା ମୁଁ ଜାଣିଥିଲି ତୁ ଆଇ.ପି.ଏସ୍ ପାଇ ଦିଲ୍ଲୀରେ ଥିଲୁ ବୋଲି । ଓଡ଼ିଶାକୁ କେବେଠାରୁ ଆସିଲୁଣି ?

ଏଇ ଅଳ୍ପ କେଇ ମାସହେବ ଓଡ଼ିଶା ଆସିଛି ।

ତେବେ ଭଲ ହେଲା ଆମ ଅନୁଷ୍ଠାନର ଫଙ୍କସନ୍‌କୁ ତୁ ବି ଆସିବୁ । ଫଙ୍କସନ୍ ପାଇଁ ମୁଁ ଟିକିଏ ବ୍ୟସ୍ତ ଅଛି । ତୋ' ସହ ଏକାନ୍ତରେ ବହୁତ କଥା ଅଛି । ଗୋଟେ ଅତି ବ୍ୟସ୍ତତାର ଆଳ ଦେଖାଇ ନରହରି ଚାଲିଯିବାକୁ ଚାହୁଁଥିଲା । ଯିବାବେଳେ କହିଲା ହଁ ତୋ' ଅଫିସ ଠିକଣାତ ଜାଣିଲି ମୁଁ କାଲି ଆସିବି ତୋ' ସହ ସାକ୍ଷାତ ପାଇଁ ।

ସତକୁ ସତ ପରଦିନ ମୋ ଅଫିସରେ ପହଞ୍ଚି ଯାଇଥିଲା ନରହରି । ପହଞ୍ଚିବା ପରେ କହିଲା-କାଲି ଫେରିବାପରେ ମୁଁ ଗୋଟିଏ କଥା ଚିନ୍ତାକଲି, ଭାବିଲି ଫୋନରେ ତୋ' ମତାମତ ନେବାକୁ ପୁଣି ଭାବିଲି ନା ସାକ୍ଷାତ କରି ମତାମତ ନେଲେ ଭଲ ହେବ । ତେଣୁ ଚାଲି ଆସିଲି ।

କେଉଁ କଥାରେ ମୋ ମତାମତ ଲୋଡ଼ା ହେଲା ?

ଆମ ଅନୁଷ୍ଠାନର ଉତ୍ସବକୁ ତୁ ସମ୍ମାନୀତ ବକ୍ତା ହିସାବରେ ଯିବୁ । ମୋର ବାଲ୍ୟ ସାଙ୍ଗ ହେତୁ ମୁଁ ତୋର ନାଁ ସ୍ଥିର କରି କାଲି ଫେରିବାପରେ ପ୍ରେସକୁ ନିମନ୍ତ୍ରଣ ପତ୍ର ଛପାଇବା ପାଇଁ ଦେଇ ଦେଇଛି କେବଳ ଔପଚାରିକତା ଦୃଷ୍ଟିରୁ ତୋ ମତାମତ ଦେଇଯିବାଟା ଭଲ ହେବ ବୋଲି ଭାବି ଆସିଛି ।

ମୁଁ ପୁଣି ବକ୍ତା ! ତୋତେ ଏ ବୁଦ୍ଧି କିଏ ଦେଲା ? ତା'ପରେ ଆମ ଚାକିରୀରେ ସେ ସବୁ କଥା କାହିଁ । ସେଠାକୁ ମନ୍ତ୍ରୀ ଫନ୍ତ୍ରୀକୁ ଡ଼ାକୁଥିବୁ ତେଣୁ ବକ୍ତା ଭାବରେ କୌଣସି ଭଲ ଭାଷା ବିଶେଷଜ୍ଞଙ୍କୁ ଡ଼ାକିଲେ ଭଲ ହେବ ।

ନା-ତୁ ମନାକରି ପାରିବୁ ନାହିଁ । ତୋ' ଉପସ୍ଥିତ ହିଁ ମୋ ପାଇଁ ଯଥେଷ୍ଟ । କ'ଣ ଏତିକି ମୋ ପାଇଁ କରିବୁନି ?

ମୁଁ କଲିଂ ବେଲ ଦେଲି । ପଶି ଆସୁଥିବା ଅର୍ଦ୍ଧଳୀକୁ କହିଲି ଆସିଷ୍ଟାଣ୍ଟ ସାମନ୍ତ ବାବୁଙ୍କୁ ଡ଼ାକିବା ପାଇଁ ।

ସାମନ୍ତ ବାବୁ ମୋ ରୁମ୍‌କୁ ପଶି ଆସୁ ଆସୁ ନରହରିକୁ ଦେଖି ଚମକି ପଡ଼ିବା ଭଳି ହେଲେ । ମୁଁ ତାଙ୍କୁ ନରହରି ସହ ପରିଚୟ କରାଇବା ପରେ କହିଲି ଦେଖନ୍ତୁତ ବାର ତାରିଖରେ ମୋର

ପ୍ରୋଗ୍ରାମ କ'ଣ ଅଛି ଏବଂ ସେଥିରେ ସନ୍ଧ୍ୟା ବେଳକୁ ବିଦେଶୀ ଭାଷା ପ୍ରତିଷ୍ଠାନର ବାର୍ଷିକ ଉତ୍ସବରେ ଯୋଗ ଦେବାର କାର୍ଯ୍ୟକ୍ରମଟିଏ ଯୋଡ଼ି ଦିଅନ୍ତୁ ।

ହଉ ତେବେ ଠିକ୍ ଅଛି ମୁଁ ଯିବି । ତୁ ପରେ କେବେ ସୁବିଧା ଦେଖି ଘର ଆଡ଼େ ଆ ।

ନରହରି ଚାଲିଯିବା ପରେ ମୋ ସହକାରୀ ସାମନ୍ତ ବାବୁ ମୋତେ ପଚାରିଲେ ସାର୍ ଏ ଲୋକଙ୍କୁ ଆପଣ କେମିତି ଜାଣିଲେ ?

କ'ଣ ହେଲା କି ?

ଏ ଲୋକ ନାଁରେ ଆମ ସି.ବି.ଆଇ. ର ଗୋଟେ ସ୍ୱତନ୍ତ୍ର ଫାଇଲ୍ ହୋଇଗଲାଣି । କେବଳ କେତେକ ମନ୍ତ୍ରୀଙ୍କୁ ହାତରେ ରଖି ଏ ସବୁ କେଶ୍‌ରୁ ମୁକୁଳି ଚାଲିଛି ।

କି କେଶ୍ ସବୁ ।

ଜାଲ୍ ସାର୍ଟିଫିକେଟ ପ୍ରଦାନ କାରୀ ସଂସ୍ଥା । ମାଟ୍ରିକଠାରୁ ଏମ୍.ଏ.ଯାଏଁ ଏପରିକି ପି.ଏଚ୍.ଡ଼ି ଓ ଡ଼ି.ଲିଟ୍ ସାର୍ଟିଫିକେଟ୍ ମଧ ବିଭିନ୍ନ ରେଟ୍‌ରେ ମିଳୁଛି ।

ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲି । ମୋର ବିସ୍ମୟ ଭାବ ଦେଖି ସେ କହିଲେ ହଁ ସାର୍, ମାତ୍ରସେ ଅନୁଷ୍ଠାନ ବିରୋଧରେ କୌଣସି କାଯ୍ୟନୁଷ୍ଠାନ ଦେବା ପୂର୍ବରୁ କୁଆଡୁ ନା କୁଆଡୁ ପ୍ରେସର ଆସି ଆମ ଉପରେ ପଡ଼େ । କେତେକ ମନ୍ତ୍ରୀତ ଦିନରାତି ଫୋନ୍‌କରି ବ୍ୟସ୍ତ କରିପକାନ୍ତି । ତା'ର କାରଣ ହେଉଛି ବହୁ ମନ୍ତ୍ରୀ ଓ ପଦସ୍ଥ ଅଫିସର ଏ ଜାଲ୍ ସଂସ୍ଥାରୁ ସାର୍ଟିଫିକେଟ ନେଇ ନିଜର ଆତ୍ମୀୟ ଚେଲା ଚାମଚା ମାନଙ୍କୁ ବିଭିନ୍ନ ସଂସ୍ଥାରେ ଥଇଥାନ କରିଛନ୍ତି । ଏ ସଂସ୍ଥାର ଚେର ଏତେ ବ୍ୟାପକ ଯେ ତା'ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ କେହି ସାହସ କରି ପାରୁ ନାହାନ୍ତି ।

ମୁଁ ତାଙ୍କୁ ସେ ଫାଇଲଟି ଦେବାକୁ କହି ନିର୍ଦ୍ଦେଶ ଦେଲି ଆପଣ ପ୍ରସ୍ତୁତ ରୁହନ୍ତୁ ଏ ସଂସ୍ଥାର ଚେରକୁ ଧରିବା ପାଇଁ ।

ଫାଇଲଟି ଦେଖି ସାରିବା ପରେ ମୋ ପରବର୍ତ୍ତୀ ପଦକ୍ଷେପ ସଂପର୍କରେ ଚିନ୍ତା କରୁ କରୁ ଖବର କାଗଜ ଓଲଟାଉଥିଲି । ନଜର ପଡ଼ିଗଲା ହେଡ୍‌ଲାଇନ ହୋଇ ବାହାରିଥିବା ସମ୍ବାଦ "କଳାହାଣ୍ଡି,କୋରାପୁଟ ଓ ଫୁଲବାଣୀରେ ଶହ ଶହ ଜାଲ୍ ଶିକ୍ଷକ ନିଯୁକ୍ତ" ସମ୍ବାଦ ଉପରେ । ସମ୍ବାଦ ଟି ପଢ଼ିସାରି ଚିନ୍ତା କଲି ଯଦି ମୁଁ ଜଣେ ଜାଲ ଶିକ୍ଷକଙ୍କୁ ଧରିପାରେ ତେବେ ଏ ସଂସ୍ଥାର ଚେରକୁ ଧରିହେବ । ତେଣୁ ନରହରିକୁ ଫୋନ୍ କରି ଜଣାଇଦେଲି କେତେକ ଅନିବାର୍ଯ୍ୟ କାରଣବଶତଃ ମୁଁ ତା'ଅନୁଷ୍ଠାନ ର ଉତ୍ସବକୁ ଯାଇପାରିବି ନାହିଁ । ତା'ପରେ ଫୁଲବାଣୀ ଯାଇ ଜଣେ ଗିରଫ ଶିକ୍ଷକଙ୍କ ଠାରୁ ସମସ୍ତ ତଥ୍ୟ ସଂଗ୍ରହ କରି ଫେରିଲି ଭୁବନେଶ୍ୱର ।

ମୋର ସହକର୍ମୀ ମାନଙ୍କୁ ଡ଼ାକିକହିଲି କୌଣସି ରାଜନୈତିକ ହସ୍ତକ୍ଷେପ ପୂର୍ବରୁ ଆମେ ଅଚାନକ ଚଢ଼ାଉ କରିବା ବିଦେଶୀ ଭାଷା ପ୍ରତିଷ୍ଠାନର ଅଫିସ । ଯୋଜନା ମୁତାବକ ଚଢ଼ାଉ କରାଗଲା । ସମସ୍ତ ଆପତ୍ତି ଜନକ କାଗଜପତ୍ର,ଛାପା ମେସିନ୍, ସିଲ୍ ଜବତ୍ କରି ନରହରିକୁ ଗିରଫ କଲାବେଳେ ସେ ଥିଲା ପ୍ରତିକ୍ରିୟା ବିହୀନ । ତାକୁ ଏକାନ୍ତରେ ଜେରା କରିବାକୁ କହି ଜେଲ ହାଜତ ଭିତରକୁ ପଠାଇଦେଲି ।

ଜେଲ ହାଜତରେ ଭିତରେ ମୁଁ ତା' ପାଖରେ ପହଞ୍ଚିବା ବେଳକୁ ସେ ଖୁବ୍ ନିମଗ୍ନଭାବେ ବହିଟିଏ ପଢୁଥିଲା 'ଦି ଆର୍ଟ ଅଫ୍ ଲିଭିଙ୍ଗ୍' । ମୁଁ ପହଞ୍ଚିବାପରେ ସାମାନ୍ୟ ବିଚଳିତ ନ ହୋଇ କହିଲା ବସ । ମୁଁ ବସିବାପରେ କହିଲା- ମୁଁ ଜାଣେ ତୁ କ'ଣ ସବୁ ପଚାରିବୁ ଏବଂ ମୋର ଉତ୍ତରଟା ମଧ୍ୟ ତୁ ଅନେକଟା ଜାଣିଥିବୁ । ତେବେ ମୁଁ ଖୁସି ଯେ ତୁ ତୋର କର୍ତ୍ତବ୍ୟ ଠିକ୍ ଭାବେ କରିଛୁ ହଉ କ'ଣ ପଚାରୁଛୁ ପଚାର ।

ନା-ମୁଁ ତୋତେ ବିଶେଷ କିଛି ପଚାରିବି ନାହିଁ କେବଳ ଜାଣିବାକୁ ଚାହୁଁଛି......

ମୁଁ ଏମିତି କାର୍ଯ୍ୟ କାହିଁକି କରୁଥିଲି ବୋଲିନା ? ସମସ୍ତ ଜ୍ଞାନ ଓ ଯୋଗ୍ୟତା ସତ୍ତ୍ୱେ କେବଳ ସାର୍ଟିଫିକେଟଟିଏ ହୋଇ ପାରିଲାନି ସେତେବେଳେ ମୁଁ ପ୍ରତିଜ୍ଞା କରିଥିଲି ପ୍ରତିଶୋଧ ନେବାପାଇଁ କିଛି ଯୋଗ୍ୟତା ନଥିବା ଲୋକମାନଙ୍କୁ ସାର୍ଟିଫିକେଟ୍ ଦେଇ ସେମାନେ ଚାହୁଁଥିବା ପଦବୀରେ ନିଯୁକ୍ତ କରିଦେବାକୁ । ମୁଁ ମୋ ଯୋଜନାରେ ସଫଳ ହୋଇଛି ମଧ୍ୟ । ଏହାଠାରୁ ଆଉ ବଡ଼ ପ୍ରତିଶୋଧ ମୁଁ କ'ଣ ନେଇ ପାରିଥାନ୍ତି କହ ତ ? ତେବେ ମୁଁ ଗୋଟିଏ ରଂଜା ମାତ୍ର ଯାହାକୁ ଆଶ୍ରାକରି ବହୁତ ଲତା ମାଡ଼ିଛନ୍ତି । ତୁ ରଂଜାକୁ ଧରି ପାରିଲୁ ସତ ପାରିବୁ ଯଦି ମାଡ଼ିଥିବା ଲତାଙ୍କୁ ଟାଣି ଓଟାରି ଫିଙ୍ଗିଦେ । ମାତ୍ର ମୋର ବିଶ୍ୱାସ ତୁ ସଫଳ ହୋଇ ପାରିବୁ ନାହିଁ କାରଣ କମ୍ବଳ ଗୋଟାକ ଯାକ ବାଳ ତୁ କେବେ ବାଛିବୁ ?

# ଅଚିହ୍ନା ଶବ

ବାଉଁଶରାଣୀ କିମ୍ବା ସାପୁଆ କେଳାର ନାଚ ଦେଖିବା ଭଳି କିଛିଲୋକ ଜମା ହୋଇଥିଲେ । କିଛି ଲୋକ ଭିଡ଼ ଭେଦି ହେଉ ଅବା ଭିଡ଼ ପଛରେ ଗୋଡ଼ ଟେକି ସେଇ ଅଭାବିତ ଦୃଶ୍ୟଟିକୁ ଦେଖିବାକୁ ବ୍ୟାକୁଳ ହେଉଥିଲେ । ଘଟଣା କ'ଣ ଜାଣିବାର ଆଗ୍ରହ ନେଇ ମୁଁ ଗାଡ଼ି ଅଟକାଇଲି । ମୋର ଗାଡ଼ିରୁ ଓହ୍ଲାଇବା ଦେଖି କିଛି ଲୋକ ବାଟ ଭାଙ୍ଗି ଜାଗାକରିଦେଲେ ମୋତେ ଭିଡ଼ ଭିତରକୁ ଯିବା ପାଇଁ । ଭିଡ଼ ଭିତରେ ଯାଇ ମୁଁ ଯାହା ଦେଖିଲି ମୋତେ ଲାଗିଲା ଯେମିତି ମୁଁ ସ୍ଥାଣୁ ପାଲଟି ଯାଇଛି । ସଂପୂର୍ଣ୍ଣ ଉଲଗ୍ନ ଝିଅଟିଏ ବରଗଛରେ ଦୁଇ ସିଅ ମଝିରେ ଭିଡ଼କୁ ପଛ କରି ବସିବା ଭଳି ଭଂଗିରେ ବସିଛି ।

ଝିଅଟି ଜୀବିତ ନା ମୃତ । ଦ୍ୱନ୍ଦରେ ପଡ଼ି ମୁଁ ଦେଖଣାହାରୀ ମାନଙ୍କୁ ଚାହିଁଲି ।

କାହାରି ପାଖରେ ଜବାବ ନଥିଲା । ଅଯଥା ପୋଲିସ ଝମେଲାରେ ନ ପଡ଼ିବା ପାଇଁ କେହି ବି ଆଗେଇ ଆସୁନଥିଲେ ଲୁଗା ଖଣ୍ଡେ ଢ଼ାଙ୍କି ଦେବା ପାଇଁ । ମୁଁ ଭିଡ଼କୁ ପ୍ରଶ୍ନ କଲି ଏଠି ପୋଲିସ୍ ଷ୍ଟେସନ୍ ଅଛି ? ସାମାନ୍ୟ ଜାଣିଥିବା ଲୋକଟିଏ କହିଲା ଥାନା ନାହିଁ ଫାଣ୍ଡିଟିଏ ଅଛି । ହେଲେ ଫାଣ୍ଡି ବାବୁ କେଉଁ ଗୋଟେ ଗାଁକୁ ଯାଇଛନ୍ତି ଚୋରା ମଦ କେଶ୍‌ରେ ।

କନେଷ୍ଟବଲ ?

ସେ ବି ଥାନା ବାବୁଙ୍କ ସାଥିରେ ଯାଇଛି ।

ମୁଁ ଗାଡ଼ି ପାଖକୁ ଆସି ମୋର ବେଡ଼ିଂ ଖୋଲି ବେଡ୍‌ସିଟ୍ ଓ ଲୁଙ୍ଗି ଖଣ୍ଡେ ଧରି ବାହାରିଲି ଝିଅଟିକୁ ଢ଼ାଙ୍କି ଦେବା ପାଇଁ ।

ଭିଡ଼ ମଧ୍ୟରୁ ଜଣେ ବୟସ୍କ ଲୋକ କହିଲେ- ବାଟରେ ଯିବା ଲୋକ ଆପଣ, କାହିଁକି ଅଯଥା

ଝମେଲାରେ ପଶିବେ । ଏଇଟା ରେପ୍ ଓ ମର୍ଡ଼ର ଘଟଣା ପରି ଲାଗୁଛି ।

ଭାବିଲି ସତକଥା- ମୁଁ ଜଣେ ସରକାରୀ କର୍ମଚାରୀ, ଅଫିସ କାର୍ଯ୍ୟରେ ଗସ୍ତରେ ଅଛି । ଏସବୁ ଅଯଥା ଝମେଲାରେ ମୁଣ୍ଡ ପୁରାଇଲେ ହଇରାଣ ହେବି ସିନା କିଛି ହେବନି । ଏମିତି ମାନବୀୟ କାର୍ଯ୍ୟ ପାଇଁ ଅଫିସ୍ ମୋତେ ସାବାସ ଦେବ ନାହିଁ ବରଂ କର୍ତ୍ତବ୍ୟରେ ଅବହେଳାର ଆରୋପ କରିବ । ଏଥିରେ ମୁଣ୍ଡ ନ ପୂରାଇବା ଭଲ ।

ମୁଁ ଦୋ -ଦୋ ପାଞ୍ଚ ହୋଇ ଆଖି ଆଗରେ ଘଟଣାଟି ଦେଖିଛି ବୋଲି ଏତେ ପ୍ରବଣ ହେଉଛି । ଖବର କାଗଜରେ ତ ଏ ସବୁ ନିତି ଦିନିଆ ଘଟଣା । ଏମିତି ଦିନଟିଏ ନାହିଁ ଯେଉଁଦିନ ବଳାତ୍କାର, ବଧୂହତ୍ୟା କିମ୍ବା ବଳାତ୍କାର ଓ ହତ୍ୟା ସଂବାଦଟିଏ ନାହିଁ । ଏ ସବୁ ବିଷୟରେ ଏତେ ସ୍ପର୍ଶ କାତର ହେଲେ ଏ ଯୁଗରେ ଚଳିହେବ ନାହିଁ ।

ମନକୁ ବୁଝାଇ ଦେଇ ମୋର ବେଡ଼୍‌ସିଟ୍ ଓ ଲୁଙ୍ଗିକୁ ଗାଡ଼ିରେ ରଖିଦେଇ ଡ୍ରାଇଭରକୁ କହିଲି ଚାଲ । ମୋ ଭିତରେ ଲାଗି ରହିଥାଏ ଗୋଟେ ନୀରବ ଦ୍ୱନ୍ଦ । କିଛି ସମୟ ପରେ ଡ୍ରାଇଭର କହିଲା- ଏ ଅଯଥା ଝମେଲାରୁ ଦୂରେଇ ଆସି ଠିକ୍ କଲେ ଆଜ୍ଞା । ମୁଁ ଥରେ ଏମିତି ଝମେଲାରେ ଫସିଥିଲି ।ମୁଁ ଏ ଅଫିସ୍‌ରେ ଚାକିରୀ କରିବା ଆଗରୁ ଟେମ୍ପୋଟିଏ ଚଳାଉଥିଲି । ଦିନେ ରାତିରେ- ରାତି ବି ସେମିତି ବେଶି ହୋଇ ନଥାଏ, ମାତ୍ର ଝିପି ଝିପି ବର୍ଷା ଲାଗି ରହିଥିବାରୁ ରାସ୍ତାଘାଟ ଶୁନ୍‌ଶାନ୍ ହୋଇ ସାରିଥାଏ । ଦୁଇଜଣ ଟୋକା ଆସି ମୋତେ କହିଲେ ଷ୍ଟୋଭ ଫାଟି ପୋଡିଯାଇଥିବା ଗୋଟେ ସ୍ତ୍ରୀ ଲୋକକୁ ଡ଼ାକ୍ତରଖାନା ନେବା ପାଇଁ । ଝିପି ଝିପି ବର୍ଷା ପାଇଁ ମୁଁ ନାହିଁ ନାହିଁ ହେଉଥାଏ । ସେମାନେ ଏକରକମ ବାଧ କଲେ ମୋତେ ଯିବା ପାଇଁ । ସେତେବେଳେ ମୋର ବି ଏତେ ଆଇଡ଼ିଆ ନଥିଲା । ମଉକା ଦେଖି ବର୍ଷା ପାଇଁ ଦିନମାନ ବ୍ୟବସାୟ ମାନ୍ଦା ହୋଇଥିବାରୁ ମୁଁ ଚାରିଗୁଣ ଅଧିକା ଭଡ଼ା ମାଗିଲି । ସେମାନେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ ଦେବା ପାଇଁ । ମୁଁ ଯଦି ଆହୁରି ଅଧିକା କହିଥାନ୍ତି ତଥାପି ମଧ ସେମାନେ ହୁଏତ ଆପତ୍ତି କରିନଥାନ୍ତେ । ମାତ୍ର କିଏ ଜାଣିଥିଲା ସାରୁ ଭିତରେ ମାରୁ ପଶିଛି ବୋଲି ।

ଡ଼ାକ୍ତରଖାନାରେ ପହଞ୍ଚୁ ପହଞ୍ଚୁ ସ୍ତ୍ରୀ ଲୋକଟି ମରିଗଲା । ଅପମୃତ୍ୟୁ କେସ୍ ବୋଲି ଡ଼ାକ୍ତର ପୋଲିସ୍‌କୁ ରିପୋର୍ଟ କଲେ । ପରେ ଜାଣିଲି ଷ୍ଟୋଭ୍ ଫାଟି ସ୍ତ୍ରୀଲୋକଟି ମରିନଥିଲା- ତାକୁ କିରୋସିନି ଢ଼ାଳି ଜଳାଇ ଦିଆ ଯାଇଥିଲା - ସେମାନେ ତ ଦୋଷ କରି ଯାହା ହଇରାଣ ହେଲେ ଅବା ସଜା

ଭୋଗିଲେ- ମାତ୍ର ମୋ ଗାଡ଼ିରେ ମୁଁ ନେଇଥିବାରୁ କମ୍ ଥର ଥାନା ଓ କୋଟ୍‌ର ଚକ୍‌କର୍ କାଟିନି ଆଜ୍ଞା । ସେ ଦିନଠାରୁ ମୁଁ କାନ ନାକ ମୋଡେଇ ହୋଇଛି କିଛି ନଜାଣି ଏସବୁ ଅପମୃତ୍ୟୁ ମାମଲାରେ ମୁଣ୍ଡ ଖେଳାଇବା ଠିକ୍ ନୁହେଁ ।

ମୁଁ ଯଥାରିତି ମୋର ଗୁପ୍ତ କାର୍ଯ୍ୟ ସାରି କ୍ୱାଟରକୁ ଫେରିଆସିଲି ସନ୍ଧ୍ୟାରେ । ଅଫିସ୍ ପିଅନ୍ ଆଣି ଡ଼ାକ ଦେଇଗଲା । ସେଥିରେ ଥିବା ଟେଲିଗ୍ରାମ୍‌ଟିକୁ ପ୍ରଥମେ ଖୋଲିଲି । ଲେଖାଥିଲା ‘‘ରିଚିଂ ଅନ୍ ଇଲେଭେନ୍‌ଥ୍-ସରୀତା’’ ସାମ୍ନା ଟେବୁଲ୍ କ୍ୟାଲେଣ୍ଡରକୁ ଚାହିଁଲି । ଆଜି ବାରତାରିଖ , ସରୀତା କାଲି ଆସିବେ ବୋଲି ଟେଲିଗ୍ରାମ୍ କରିଛନ୍ତି-ଅଥଚ କାହାନ୍ତି ? ହଉ କିଛି ଅସୁବିଧା ହୁଏତ ହୋଇଥିବ ଆସିପାରିନାହାନ୍ତି ।

ମନେ ମନେ ସରିତାଙ୍କ ଉପରେ ବିରକ୍ତ ହେଲି - ମନା କରୁଛି ଚାକିରୀ କରିବା ପାଇଁ । ମୁଁ ଏଠି ଏକା ତମେ ସେଠି ଏକା । କି ଚାକିରୀ ଅବା-ନାଁକୁ ଅଧ୍ୟାପିକା ।ପ୍ରାଇଭେଟ୍ କଲେଜ୍‌ରେ ଅଧାପିକା ହେଇ ଏମିତି ଗୋଡି ଖଟିବାର ମାନେ କ’ଣ ? ତା’ପରେ ଆଜିକାଲି ଛତୁ ଫୁଟିବା ପରି ଯେମିତି ପ୍ରାଇଭେଟ୍ କଲେଜ୍‌ମାନ ହେଲାଣି - ସେଥିରେ ଦରମା କେବେ ମିଳିବ ତା’ର କିଛି ଠିକ୍ ଠିକଣା ନାହିଁ । ମାତ୍ର ତାଙ୍କର ଏକାନ୍ତ ଜିଦ୍ ଏତେ ପାଠ ଶାଠ ପଢ଼ି ପୁଣି ଡ଼କ୍ଟରେଟ୍ କରି ଗୃହିଣୀ ହୋଇ ଘରେ ବସିରହିଲେ ଶିକ୍ଷାର ମୂଲ୍ୟ କ’ଣ ରହିଲା । ତା’ପରେ ଶିକ୍ଷା ବିଭାଗରେ ତ ପ୍ରଚୁର ଛୁଟି । ତମର ସିନା ଛୁଟି ନାହିଁ- ମାତ୍ର ମୁଁ ତ ଛୁଟିରେ ତମ ପାଖକୁ ଆସିପାରିବି, ପରସ୍ପର ଠାରୁ ସାମୟିକ ବ୍ୟବଧାନ ଥିଲେ ବରଂ ଦାମ୍ପତ୍ୟ ବେଶି ମଧୁମୟ ହୋଇପାରିବ ।

ଶେଷରେ ତାଙ୍କ ଇଚ୍ଛାକୁ ସମ୍ମାନ ଜଣାଇଥିଲି ।

ଖାଇସାରି ମୁଁ ଶୋଇବାକୁ ଯାଉଛି- କଲିଂବେଲ୍ ବାଜିଲା । ହୁଏତ ସରୀତା ଆସିଥାଇ ପାରନ୍ତି ଭାବି ମୁଁ ତରବର ହୋଇ କବାଟ ଖୋଲିଲି । ଦ୍ୱାର ସାମ୍ନାରେ ଠିଆ ହୋଇଥିଲେ ଜଣେ ପୋଲିସ୍ ଅଫିସର । ମୁଁ ବିସ୍ମୟ ହୋଇ ତାଙ୍କୁ ଚାହିଁବା ବେଳେ ସେ କହିଲେ ଗୋଟିଏ ବିଶେଷ ଜରୁରୀ କାର୍ଯ୍ୟରେ ଆପଣଙ୍କ ପାଖକୁ ଏତେ ରାତିରେ ଆସିବାକୁ ପଡ଼ିଲା ।

ଜରୁରୀ କାର୍ଯ୍ୟ !

ଦେଖନ୍ତୁ ଏଇ ଠିକଣାଟି ଆପଣଙ୍କର ?

ହଁ-ଏଇଟି ମୋ ଠିକଣା ।

ଏଇ ଫଟୋଟି ?

ଫଟୋଟି ଦେଖିସାରିବା ପରେ ମୁଁ ଭାବିଲି ଏଇଟି ମୋ ସ୍ତ୍ରୀଙ୍କର ଫଟୋ-କେଉଁଠୁ ପାଇଲେ ?

ଏଥର ପଚାରିଲି- କ'ଣ ହୋଇଛି ?

ଗତରାତି କଟକରୁ ଆସୁଥିବା ବସ୍‌ଟି ବହୁ ବିଳମ୍ବରେ ଏଠାରେ ଆସି ପହଞ୍ଚିଲା ପ୍ରାୟ ରାତି ବାରଟା ପାଖାପାଖି । ସେଥିରୁ ଜଣେ ମହିଳା ଯାତ୍ରୀ ଓହ୍ଲାଇଲେ । ରାତି ବାରଟାରେ କୌଣସି ରିକ୍‌ସା ନମିଳିବାରୁ ସେ ବସ୍‌ଷ୍ଟାଣ୍ଡରେ ଛିଡ଼ା ହୋଇଥିବା ସମୟରେ କିଛି ଅସାମାଜିକ ଗୁଣ୍ଡାମାନେ ତାଙ୍କୁ ଗଣଧର୍ଷଣ କରିଥିଲେ । ଧର୍ଷଣ ପରେ ସେ ମରିଯାଇଥିବାର ଭାବି ସହରଠାରୁ କିଛି ଦୂରକୁ ନେଇ ଗୋଟିଏ ଗଛମୂଳରେ ତାଙ୍କୁ ପକାଇ ଦେଇ ଚାଲିଯାଇଥିଲେ ।

ସକାଳ ପ୍ରହରରୁ ସେଠାରେ ଭିଡ ଲାଗିଥିଲା ଅଥଚ ରେପ୍ ଓ ମର୍ଡ଼ର କେସ୍ ଭାବି କୌଣସି ଲୋକ ସେଠାକୁ ଯାଇ ମହିଳା ଜଣଙ୍କୁ ଦେଖିବାକୁ ସାହସ କରିନଥିଲେ କି ଉଚିତ୍ ମଣି ନଥିଲେ । ଖବର ପାଇ ଆମ ଫାଣ୍ଡିର ଏ.ଏସ୍.ଆଇ ଆସି ଦେଖିଲେ- ମହିଳା ଜଣକ ମୃତା ନୁହଁ ଜୀବିତା ? ସେ ତୁରନ୍ତ ତାଙ୍କୁ ମେଡ଼ିକାଲ ନେଲେ । ମାତ୍ର ଦୁଃଖର ବିଷୟ ଯେ ଡ଼ାକ୍ତରଖାନାରେ ପହଞ୍ଚିବାର ଅଳ୍ପ ସମୟ ପରେ ସେ ମରିଗଲେ ।

ସେ କେଶ୍‌ର ଓ ତାଙ୍କ ବିଷୟରେ ଅନୁସନ୍ଧାନ କଲାବେଳେ ଆମେ ତାଙ୍କ ଗୋଟେ ଭ୍ୟାନିଟ୍ ବ୍ୟାଗ୍ ପାଇଲୁ । ସେଥିରୁ ଏଇ ଠିକଣା ଓ ଫଟୋଟି ପାଇଲୁ । ଫଟୋଟି ମହିଳାଙ୍କର । ଯେହେତୁ ଠିକଣାଟି ଆପଣଙ୍କର ତେଣୁ ହୁଏତ ଆପଣଙ୍କଠାରୁ କିଛି ତଥ୍ୟ ମିଳିପାରେ ବୋଲି ପଚାରିବାକୁ ଆସିଲୁ ।

ମୋ ଆଖିଆଗରେ ନାଚିଉଠୁଥିଲା ସକାଳର ସେହି ସଂପୂର୍ଣ୍ଣ ଉଲଗ୍ନ ମହିଳାଟିର ଛବି ଏବଂ ବାଉଁଶରାଣୀ ଦେଖିବା ପରି ତାଙ୍କୁ ଘେରି ରହିଥିବା ସମବେତ ଭିଡ଼ । ମୋତେ ଲାଗୁଥିଲା ସେହି ଭିଡ଼ ମଝିରେ ସଂପୂର୍ଣ୍ଣ ଉଲଗ୍ନ ହୋଇ ଗଣଧର୍ଷଣର ଶିକାର ହେଉଛି ମୁଁ । ମୋ ଭିତରର ଭୀରୁ ପୁରୁଷଟି ପ୍ରତିରୋଧ କରିବା ପରିବର୍ତ୍ତେ ପଳାୟନ କରୁଛି, ମାତ୍ର ସେ ଧାଇଁ ପାରୁନି କାରଣ ତା'ର ପାଦତଳୁ ଖସି ଖସି ଯାଉଛି ମାଟି ।

କ'ଣ ଭାବୁଛନ୍ତି ? କିଛି ଜାଣିଛନ୍ତି ଏ ମହିଳା ଜଣଙ୍କ ବିଷୟରେ ? ତାଙ୍କ ପ୍ରଶ୍ନରେ ମୁଁ ପ୍ରକୃତିସ୍ଥ ହେଲି । ଭାବିଲି ସରୀତାର ଆର୍ତ୍ତି ଅବସ୍ଥାରେ ସହାୟତା ନକରି ମୁଁତ ପଳାୟନ କରିଛି ଝମେଲା ଭୟରେ । ଏବେ ଶବ ସହ ସଂପର୍କ କ'ଣ ? ଏବେ ଶବକୁ ଚିହ୍ନଟ କଲେ ବରଂ ଏକ ଧର୍ଷିତା ମହିଳାର ସ୍ୱାମୀ ହିସାବରେ ମୁଁ ଚିହ୍ନଟ ହେବି । ଲାଭ କ'ଣ ହେବ ଏମିତି ଏକ ପରିଚୟରେ ଜୀବନସାରା ସନ୍ତୁଳି ହେବାରେ । ବରଂ ସେ ଶବ ଅଚିହ୍ନା ଥାଉ । କିଛି ସମୟ ଚିନ୍ତାକଲା ପରେ କହିଲି-ହଁ ,ଠିକଣାଟି ମୋର । ମାତ୍ର , ଫୋଟୋଟି କାହାର ମୁଁ ଚିହ୍ନିପାରୁନି ।

ଶବକୁ ଦେଖିଲେ ଜାଣିପାରିବେ କି ?

ଫଟୋକୁ ଦେଖି ଯେତେବେଳେ ଚିହ୍ନିପାରୁନି ଶବକୁ ଦେଖି କ'ଣ ଚିହ୍ନିବି ।

ହଉ ଠିକ୍ ଅଛି କହି ଚାଲିଯାଉଥିଲେ ପୋଲିସ୍ ଅଫିସର ମୋତେ ଲାଗୁଥିଲା ଚାରିଆଡେ କେବଳ ଅନ୍ଧାର । ଅନ୍ଧାର ଲଦି ହୋଇ ପଡୁଥିଲା । ମୋ ଉପରେ ପାହାଡ଼ ପରି । ମୁଁ ଧିରେ ଧିରେ ପାଲଟି ଯାଉଥିଲି ପଥର- ପଥରରୁ ପାହାଡ । ମୋ ଚାରିପଟେ ପ୍ରଚଣ୍ଡ ଭୂକମ୍ପ । ମୁଁ ଦବି ଦବି ଯାଉଛି ଭିତରକୁ ଭିତରକୁ, ଏବଂ ପାଲଟି ଯାଉଛି ଏକ ଅଚିହ୍ନା ଶବ ।

# ଚନ୍ଦ୍ରସେଣା

ଶୋଇଥା ଶୋଇଥା, ତତେ ତ ବେଳ ହୋଇନି ଉଠିବୁ କେମିତି ? ବାଟିକିଆ ଚାଷିତ, ଅମାର ବୋଝେଇ କରିଦେଇଛୁ ଶୋଇ ଶୋଇ ଅସ୍ୱସ କରିବୁନିତ କିଏ କରିବ ? ତୋ' ମୁହଁକୁ ଲାଜ ସରମ ସିନା କିଛି ହୁଅନ୍ତା । ମଗୁଶୀର ମାସରେ ତୋ ଚୂଲିରେ ବିଲେଇ ମୋଉଛି-ଧିକ ତୋ'ହାତ ଗୋଡ଼କୁ । ତୁ ଭଲା ଛୋଟା କି କେମ୍ପା ହୋଇଥାଆନ୍ତୁ, ଜାଣିଥାଆନ୍ତି ଛୋଟେ ଲେଙ୍ଗଡ଼ାର ହାତ ଧରିଛି ମୋ ଭାଗ୍ୟକୁ ଆଦରି ଖଟନ୍ତି । ତୋ'ତେ କ'ଣ କହିବି ମୋ କପାଳଟାତ ଫଟା । ମୋ ବାପ ଦ୍ୱିତୀୟ ପକ୍ଷ ନଆଣେ, ଗଞ୍ଜେଇ ଧୂଆଁରେ ସମ୍ପତ୍ତି ନସାରେ-ନଚେତ୍ ତୋ'ପାଖରେ କ'ଣ ଅଛି ? ପେଟର ଭୋକ ନ'ମଲା ନାହିଁ, ମନ ଭଲା ଟିକେ ମେଣ୍ଟାନ୍ତା । ସଂଜପହରୁତ ମୁର୍ଦ୍ଦାର ଭଳି ଚାରିକାତ ଲମ୍ବାଇ ଶୋଇବୁଯେ ଶୋଇବୁ, ଯେତେ ଚିମୁଟିଲେ ବି ଗୋଧି ଚମଡ଼ା ଶୁଣିବୁ କେଉଁଠୁ । ଆଉ ଯଦି କେବେ ଶୁଣୁ ତା'ଠାରୁ ନଶୁଣିବା ବି ଭଲ - ପାଟି ମରିବ ନାହିଁକି ପେଟ ପୂରିବ ନାହିଁ । ଏମିତି ଘଇତାକୁ ଧରି ଶୋଇବା ଅପେକ୍ଷା କାଠ ମୁଣ୍ଡିଆ କୁ ଧରି ଶୋଇବା ଭଲ । ସେ ତୋ'ପାଖରୁ ଚାଲିଯାଇନିଯେ ନିସ୍ତାର ପାଇଯାଇଛି । ଯୁବାବସ୍ଥସରେ ତୋ'ସହ ରହି ହନ୍ତସନ୍ତ ହେବା ଅପେକ୍ଷା ପଳାଇଗଲା ଭଲ କଲା । ଲୋକ ନିନ୍ଦା କଲେ - କରନ୍ତୁ । କିଏ କ'ଣ ଗୁମର କଥା ବୁଝୁଛି କି । ହେଇପା' ମୋରି ସାଙ୍ଗରେ ଭୂଆସୁଣୀ ହୋଇ ଆସିଥିଲେ, ତିନି ଚାରିଟା ଛୁଆର ମାଆ ହେଲେଣି । ମୁଁ କ'ଣ ଏଡ଼େ ନୀରସା ମାଟି ବାଞ୍ଝ ବୋଲାଉଛି । କହିଲି ଡ଼ାକ୍ତର ଦେଖା, କେତେ ରୋଗ ବଇରାଗକୁ ଔଷଧ ଅଛି ଏଥିପାଇଁ କ'ଣ ଔଷଧ ନାହିଁ, ତତେ ଲାଜଗନ୍ଧେଇଲା । ଆଉ କେଉଁ କଥାକୁ ଲାଜ ଗନ୍ଧଉନି ଯେଉଁଥିରେ ସଂସାର ଚଳୁଛି, ସେଇକଥାରେ ଲାଜ ।

ଚୂଲି ଉପରେ ମୁଢ଼ି ଚାଉଳ ଉବୁଜୁ ଉବୁଜୁ ବେଲର ଏ ଗାଳି ସବୁ ହେଂସ ଘୋଡ଼େଇହୋଇ ଶୋଇଥିବା ସନା ଉପରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରେନା । ସେ ବିଛଣାରୁ ଉଠିବ, ହାଇ ମାରିବ । ଗୋଡ଼ ଆଂଗୁଳି ଓ ହାତ ଆଂଗୁଳିକୁ ଫୁଟାଇବ । ମାଠିଆରୁ ପାଣି ଢ଼ାଳେ ଗଡ଼େଇ ଚାଲିଯିବ ସଜନାଗଛ ମୂଳକୁ । ମୁହଁ ଧୋଇବ, ପରିସ୍ରା କରିବ । ବାଡ଼ିର ବାଉଁଶବୁଦା ମୂଳକୁ ଯାଇଗୋଟେ ମୂଳୀ ଦାନ୍ତକାଠି ଭାଙ୍ଗି ଚୋବାଇବ । ଦାନ୍ତ ଘସା ସରିବା ବେଳକୁ ଦାନ୍ତ କାଠିଟା ଛିଡ଼ି ଛିଡ଼ି ଅଧା ହୋଇ ଯାଇଥିବ । ସେହି ଦାନ୍ତ କାଠି ପାଟିରେ ଧରି ସେ ଚାଲିଯିବ ନଈକୁ । ଝାଡ଼ା, ଗାଧୁଆ ସାରି

ଫେରିବ । ଗାଧୋଇ ଆସି କାଛରେ ପୋତି ଯାଇଥିବା ଗୋଟେ ଭଙ୍ଗା ଅଇନା ଆଗରେ ବହୁତ ସମୟଯାଏ ଟେରି ଭାଙ୍ଗିବ । ଟେରି ଭାଙ୍ଗି ମଳି ପାନିଆଁରୁ ବାଳତକ ବାହାର କରି ପହଁରାରୁ କଂଚିଟିଏ ଭାଙ୍ଗି ମଳି ବାହାର କରୁ କରୁ ପଚାରିବ - କିଛି ଅଛି ଖାଇବାକୁ ? ହଁ - ପଲଉ ଅଛି ବାଢ଼ି ଦେଉଛି ରହ ।

କିଛି ଯଦି ଘରେ ଅଛି ଦେ - ନଚେତ୍ କ'ଣ କରିବାକୁ ଅଛି କହ । କିଛି ନାହିଁ - ମୁଢ଼ି ମୁଠେ ଖାଇଦେ ।

ହଉ ଆଣ କହିଦେଇ ଚଟଟିଏ ପକାଇ ଦେଇ ବସିପଡ଼ିବ ଅଗଣାରେ ।

ସେରରେ ମୁଢ଼ି ଆଣି ଥୋଉଁ ଥୋଉଁ ବେଲ କହିବ ବୁଢ଼ା ହେଲୁଣି ବୁଦ୍ଧି ହେଲାନି । ଗାଧୋଇ ଆସି ମୁଢ଼ି ଖାଇବୁ, ପିତା କି ଲୁଣ ଟିକେ ପାଟିରେ ଦେଇଛି ।

ସନା ଉଠିଯାଇ ବାଡ଼ିକଡ଼ ନିମ ଗଛରୁ ପତ୍ରଟିଏ ଛିଣ୍ଡାଇ ଆଣି ପାଟିରେ ଦେବ । ସେରରୁ ଦୁଇଥର ମୁଢ଼ି ଚୋବାଇବା ପରେ ପଚାରିବ- ଗଛରେ ଲଙ୍କା ଅଛିକି ?

ମୁଢ଼ି ମାପି ଟୋକେଇରେ ପୂରାଉ ପୂରାଉ ବେଲ କହିବ - ସବାଖିଆ ଛେଳିଙ୍କପାଟିରେ ସେ ଗଛ କ'ଣ ଉଧୋଉଛି । ଦେଖ ଯାଇ ଗଛରେ ଥିଲେ ଥାଇପାରେ ।

ସେ ଉଠିଯାଇ ଗଛରୁ ଗୋଟେ ଯୋଡେ କଂଚା ଲଙ୍କା ଛିଣ୍ଡାଇ ଆଣିବ । ଲୁଣ କାଠିଆରୁ ଲୁଣ ଟିକେ ନେଇ ତଳେ କୁଢ଼ାଇବ ଓ ଲଙ୍କା ଲଗାଇ ମୁଢ଼ିତକ ଖାଇନେବ ।

ଖାଇସାରି ମୁଣ୍ଡରେ ଗାମୁଛାକୁ ଠେକାଟିଏ କରି ଗୋଟେ ନିର୍ଲିପ୍ତ ସନ୍ୟାସୀପରି ଠିଆହେବ, ବେଲ ତା' ମୁଣ୍ଡକୁ ମୁଢ଼ି ପସରା ଉଠାଇବାଯାଏ ।

ମୁଢ଼ି ପସରା ସନା ମୁଣ୍ଡ ଉପରକୁ ଦେଉଦେଉ ବେଲ କହିବ - ଦେଖ୍ ଆଜି ଯେମିତି ହିସାବରେ ଗଡ଼ବଡ଼ କରି ନଆସୁ । ଯେତେ ସେର ମୁଢ଼ିକୁ ସେତେ ସେର ଧାନ, ବିରି ଦେଲେ ଦୁଇଗୁରା । ଏଥିରେ ତୋ' ହିସାବ ଗଡ଼ବଡ଼ ହୋଇ ଯାଉଛି କେମିତି ? ସବୁଥିରେ ତତେ ଊଣା କରିଦେଲେ ଭଗବାନ ।

ସନା ଗାଁ'କୁ ମୁଡ଼ି ନେଇ ଚାଲିଯିବାପରେ ବେଲ ଭିତରେ ଗୋଟେ ଦୁଃଖର ଘୁଣପୋକ ତା'ରି ମାତୃତ୍ୱର ମଂଜକୁ କଟ୍ କଟ୍ କରି କାଟି ଚାଲେ । ସେ ଭାବେ କେମିତି କଟାଇବ ତା'ର ସାରା ଜୀବନ ଏମିତି ଏକ ନପୁଂସକ ସଙ୍ଗେ ? ତା'ରି ପାଇଁ କେବଳ ଦୁଇଟି ଶବ୍ଦ ତା'ର ଦେହଘଷା ହୋଇଗଲାଣି ବାଞ୍ଝ ଓ ଆଣ୍ଠୁକୁରୀ । ନଇତୁଠ କି କୂଅମୂଳକୁ ସେ ସକାଳୁ ସକାଳୁ ଚାଲିଗଲେ କେତେକ ଦେଖେଇ ଦେଖେଇ କହୁଥିବେ ଆଜିଦିନ କେମିତି କଟିବ କେଜାଣି, ସ୍ୱାଁ'କୁ କ'ଣ ବେଳ ମିଳୁନି ସକାଳୁ ସକାଳୁ ପବିତ୍ର ମୁହଁଟାକୁ ଦେଖାଇବାକୁ ଚାଲିଆସୁଛି । ବେଳେ ବେଳେ ସେ ଯେ ଲୁଗାଭିଡ଼ି ଦେଇ କଳି ନକରିଛି ସେ କଥା ନୁହଁ ମାତ୍ର ସେହି ଗୋଟିଏ କଥାକୁ ନେଇ କେତେ ଦିନ କଳି କରିବ । ତେଣୁ ମନକୁ ବୁଝାଇ ଦିଏ ଯିଏ ଯାହା କହୁଛି କହୁଥାଉ ସେଥିରେ ମୁଣ୍ଡ ନ ଖେଳାଇବା ଭଲ । ମନକୁ ବୁଝାଇ ଦିଏ ସିନା ହେଲେ ନିଜକୁ ବୁଝାଇ ବୁଝାଇ ପାରେନା । ନିଜକୁ ବୁଝାଇ ପାରୁଥାନ୍ତା ଯଦି ତା'ର କିଛି ଖାମିଥାଆନ୍ତା । ମାତ୍ର ଏତେ ସୁନ୍ଦର ଭେଣ୍ଡିଆ ମରଦଟାଏ ସହବାସ ବେଳେ ଯେ ମୁଣ୍ଡାଏ ବରଫ ଏକଥା କିଏ କାହିଁକି ଭାବି ପାରିବ । ଶରୀରରେ ଖାମି ସାଙ୍ଗକୁ ଦିମାକ୍ ବି ଖାଲି । ଯେତେ କହିଲେ ବି ଡ଼ାକ୍ତର ଦେଖାଇବା କଥା ମଉନମୁହାଁ ଯୋଗୀପରି ବସିଥିବ ଯେ,ଉଁ କରିବନି କି ଚୁଁ କରିବନି । ସେ'ତ ମାଇପିଲୋକଟାଏ କାହାକୁ ଏକଥା କହିବ ?

ସାଇରେ ଦିଅର ହିସାବ ହେବ ପଦନା, କଲିକତାରେ କେଉଁଠିଗୋଟେ ବାବୁ ଘରେ ମାଳିକାମ କରୁଛି । ଗାଁ'ରେ ଥିଲାବେଳେ ମଳିଚିଆ ଶ୍ୟାମଳ ଥିଲା । ଏବେ ତୋଫା ରଙ୍ଗ ଟିକେ ହୋଇଗଲାଣି । କଲିକତାରୁ ଆସିଲେ ଚେକ୍ ଲୁଙ୍ଗି, ସଫା ଗଞ୍ଜି ଓ କଲିକତି ଗାମୁଛାଟିଏ ବାନ୍ଧରେ ପକାଇ ରେଡ଼ିଓଟିଏ ଧରି ଏଘର ସେଘର ବୁଲେ । କି ଗୀତ ସବୁ ସେଥିରେ ବାଜୁଥାଏ ଓ ସେ ସେଥିରୁ କ'ଣ ବୁଝେ କେଜାଣି । କେତେବେଳେ ଗୀତର ସ୍ୱରରେ ସୁସୁରୀ ବଜାଉଥାଏ ତ କେତେବେଳେ ଗୀତର ସ୍ୱରରେ ସ୍ୱର ମିଳାଇ ଗାଉଥାଏ । ବେଳେ ବେଳେ ଆସି ସନାଭାଇ ପାଖରେ ବସାଉଠା କରେ । ସନା କିଛି ବୁଝୁ ଥାଉ ବା ନବୁଝୁ ଥାଉ ତା'କୁ ଦେଶ ବିଦେଶ ର କଥା ଗପେ କଲିକତା କଥା ଗପିବା ବେଳେ ଗାଁକୁ ତୁଛ କରି କହେ -କ'ଣ ଅଛି ଏଠି ? ଏଠି ଖାଲି ଗଧ ଘୁଷୁରୀ ଭଳି ଖଟ, ଖାଅ, ପିଅ, ଶୁଅ । ସେଠିତ ଭଳିକି ଭଳି ସିନେମା, ଚିଡ଼ିଆଘର, ଯାଦୁଘର, ପ୍ଲାନେଟୋରିୟମ୍, ଉଡ଼ାଜାହାଜ ପଡ଼ିଆ, ଆହୁରି କେତେ କ'ଣ ବୁଲିଲେ ବି ସରୁନଥିବ । ଚାଲେ ସନାଭାଇ, ଏଠି ବସି କ'ଣ କରିବୁ, ସେଠି ତୋତେ ପାଣି ପାଇପ୍ କିମ୍ବା କେଉଁଠି ମାଳିକାମରେ ଗୋଟେ ଲଗାଇଦେବି । କଞ୍ଚା ପଇସା ସାଙ୍ଗକୁ ତୋ'ର ବି ବୁଦ୍ଧି ଫେରିଆସିବ ।

ପଦନାର କଥା ଶୁଣି ଶୁଣି ବେଲର କାହିଁକି ମନଭିତରେ ଗୋଟେ ଭରସାହେଲା ଯେ -

ପଦନା ସହରରେ ରହୁଛି, ବହୁତ ଲୋକଙ୍କ ସହ ମିଶୁଛି । ଏତେ କଥା ଜାଣିଛି କା'କୁ କହିଲେ ସେ ନିଶ୍ଚେ କିଛି ଗୋଟେ ବାଟ ବତାଇ ଦେଇ ପାରିବ ।

ଦିନେ ସନା ନଥାଏ ଘରେ, ପଦନା ରେଡ଼ିଓ ବଜାଇ ବଜାଇ ଡ଼ାକି ଡ଼ାକି ପଶିଆସିଲା । କ'ଣ ସନା ଭାଇ ନାହିଁକି ପଚାରି ଦେଇ ଏପଟ ସେପଟ ଚାହିଁଲା । ଘର ଅଗଣାରେ ଚଟ ଗୋଟିଏ ପକାଉ ପକାଉ ବେଲ- କହିଲା, ବସ, ତମ ଭାଇ ନାହାନ୍ତି ବୋଲି ବସିବନିନା କ'ଣ ?

ପଦନା କହିଲା -ନା'ମ ସନା ଭାଇ ନ ଥିଲା କ'ଣ ହେଲା, ତମେ ତ ଅଛ । କଲିକତାରେ ଥିଲାବେଳେ ଗାଁ କୁ ଆସିବାକୁ ଇଚ୍ଛା ହୁଏ, ମାତ୍ର ଏଠାରେ ଆସି ପହଞ୍ଚିଲେ ଚାରିପାଞ୍ଚ ଦିନ ଗଲେ ବୋଅର୍ ଲାଗୁଛି ।

କ'ଣ ଲାଗୁଛି ? ବିରକ୍ତ ଲାଗୁଛି ।

କାହିଁକି ?

କ'ଣ କରିବି ଏଠି କେଉଁଠିକୁ ଗୋଟେ ବୁଲିଯିବା ଜାଗାନାହିଁ । ଖାଅ, ପିଅ, ପିଣ୍ଡାରେ ବସ । ମୋତେ ତ ଏଠି ମୋଟେ ଭଲ ଲାଗୁନି । ସେଇଥିପାଇଁତ ରେଡିଓ ଖଣ୍ଡେ ଧରି ଏଘର ସେଘର ବୁଲୁଛି । ଗୀତ ଶୁଣୁଛି ଓ ଗପସପ କରି ସମୟ ବିତାଉଛି ।

ରୋଜଗାରପତ୍ର ତ କଲଣି ଏବେ ବାହାସାହା ହୋଇପଡୁନା ?

ବାହାହେବାକୁତ ମନ ହେଲେ ମନଲାଖି ଝିଅ ପାଉନି ।

କାହିଁକି କେମିତିକା ଝିଅ ଖୋଜୁଛକି ?

ସତ କହିଲେ ଭାଉଜ-ତମ ଭଳି ଝିଅଟିଏ ହେଲେ ମୁଁ ଖୁସି ହୁଅନ୍ତି । କ'ଣ ମୋଠି କ'ଣ ଦେଖିଲକି ?

ରୂପ, ଗୁଣ ସବୁ ମୋତେ ଭଲ ଲାଗୁଛି ତେଣୁ, ଏତକ କହିସାରି ପଦନା ଗୋଟେ ଲୋଭିଲା ଆଖିରେ ଅନେଇଲା ବେଲଆଡ଼େ ।

ବେଲ କଥାର ମୋଡ଼ ବଦଳାଇ କହିଲା-ତମକୁ ଗୋଟେ କଥା ପଚାରିବି ପଚାରିବି ବୋଲି ଭାବି ପଚାରି ପାରୁନି କାଳେ ତମେ କିଛି ଖରାପ ଭାବିବ ବୋଲି ।

କ'ଣ ପଚାରିବ ପଚାର - ଖରାପ ଛାଡ଼ିକି ଭାବିବି । ଆମର ହୋଳ ଖାଲି । ସାଇପଡ଼ିଶାର ଖୁଣ୍ଟା ଶୁଣି ଶୁଣି ମୁଁ ଆଉ ପଦାକୁ ବାହାରି ପାରୁନି । ତମ ଭାଇଙ୍କୁ କେତେଥର କହିଲିଣି ଡ଼ାକ୍ତର ଦେଖାଇବା ପାଇଁ ହେଲେ ସେ କ'ଣ ମୋ କଥା ଶୁଣୁଛି ନା ବୁଝୁଛି । ତମେ ତାକୁ ଟିକେ ବୁଝାଇ ଡ଼ାକ୍ତର ଦେଖାଇ ପାରିବ ନାହିଁ । କ'ଣ ହେଇଛି ତା'ର ?

ତମେ ତ ଦିଅର ହିସାବ ହେବ ତମକୁ କ'ଣ ଲାଜ କରିବି, ଲାଜ କରିକରି ତ ଏତେ ବର୍ଷ ଗଲା ଖୁଣ୍ଟା ଶୁଣି ଶୁଣି । ତାଙ୍କଠି ସେ ଶକ୍ତି ନାହିଁ ।

ପଦନା ଟିକେ ଗୁମ୍ ଖାଇ ଚିନ୍ତାକଲା, ମନେ ମନେ ଭାବିଲା, ହଜିଲା ବଳଦ ଖୋଜିଲାଠେଇଁ, ଶିକାର ନିଷେ ପାଲରେ ପଡ଼ିବ । ପହିଲା, ଏଇଟା ଗୋଟେ କଥା । ତା'କୁ ଡ଼ାକ୍ତର ଦେଖାଇ ସବୁ ଠିକଠାକ୍ କରିଦେବା । ତମେ କାଲି ବାହାର, କଟକଯାଇ ଡ଼ାକ୍ତର ଦେଖାଇବା ।

ତମେତ ଏଇନେ ଘରେ ଅଛ କିଛିଦିନ । ମୁଁ ଟିକେ ଟଙ୍କାପଇସା ଯୋଗାଡ଼ କରେ ଯିବା ।

ଟଙ୍କାପଇସା କ'ଣ ବଡ଼ କଥା - ମୁଁ ତ ଅଛି ତମେ କାଲି ବାହାର ଯିବାପାଇଁ । ବେଲ ପାଖରୁ ଫେରିବାପରେ ପଦନାଭିତରେ ଗୋଟେ ଅବଦମିତ ଇଚ୍ଛା ଫଣା ଟେକୁଥିଲା । ମଉକାକୁ କେମିତି ସଦୁପଯୋଗ କରିହେବ ମନେ ମନେ ଏକ ସୁନ୍ଦର କଳ୍ପନା କରୁଥିଲା । ଏକ ଅସ୍ଥିର ଭାବନେଇ ସେ ଅପେକ୍ଷା କରିଥିଲା ଆସନ୍ତାକାଲିକୁ ।

ପରଦିନ ଉଭୟଙ୍କୁ ଧରି ବାହାରିଗଲା କଟକ । ଡ଼ାକ୍ତର ଦେଖାଇବା ପରେ ବେଲକୁ କହିଲା ଆହୁରି କ'ଣ ସବୁ ପରୀକ୍ଷା କରିବାର ଅଛି ଆମକୁ, କାଲିପର୍ଯ୍ୟନ୍ତ ଏଠି ରହିବାକୁ ପଡିବ କାଲି ସକାଳେ ସବୁ ପରୀକ୍ଷା କରାଇ ଫେରିବା

ବେଲ ପଚାରିଲା ଏଠି ସହର ଯାଗା ଆମେ ରହିବା କେଉଁଠି ?

ତମେ କାହିଁକି ବ୍ୟସ୍ତ ହେଉଛ - ଲଜ୍‌ରେ ରହିଯିବା ।

ଖିଆପିଆ କରି ସାରି ଲଜ୍‌ରେ ରହିବାର ବନ୍ଦୋବସ୍ତ କରି ପଦନା କହିଲା - ସନାଭାଇ, ଚାଲ ସମସ୍ତେ ସିନେମା ଯିବା ।

ସନା କହିଲା ସେ ସିନେମା ଫିନେମା ମୋତେ ଭଲ ଲଗିବନିରେ ପଦନା, ସାମଲ ଘର ଗୋଟେ ଟି.ଭି. ଆଣିଛନ୍ତି ମୁଁ ଥରେ ସେଥିରେ ସିନେମା ଦେଖୁଥିଲି, କିଛିତ ବୁଝିପାରିଲି ନାହିଁ - ଆଖିପିଛୁଳାରେ ସବୁ ଚାଲିଯାଉଥାଏ । ମୋତେ ଭାରି କ୍ଳାନ୍ତ ଲାଗୁଛି, ମୁଁ ଟିକେ ଶୋଉଛି । ବରଂ ତୁ ତୋ' ଭାଉଜକୁ ନେଇ ଦେଖାଇ ଆଣ ।

ପଦନା ବି ଏମିତି ଏକ ମଉକା ଖୋଜୁଥିଲା । ବେଲ କିଛି କହିବା ପୂର୍ବରୁ ସେ କହିଲା, ହଁ ଠିକ୍ କଥା ତା'ର ବି କାଲି ସବୁ ଟେଷ୍ଟ ହେବ, ସେ ଟିକେ ରେଷ୍ଟ ନେଉ ।

କଲିକତାରେ ରହୁଥିବା ଯୋଗୁଁ 'ଏ' ମାର୍କା ସିନେମା ବିଷୟରେ ପଦନା ବହୁତ କଥା ଜାଣି ଯାଇଥିଲା । ଗୋଟେ ପାନଦୋକାନୀଠାରୁ ପଚାରି ବୁଝିନେଲା କେଉଁଠି ଚାଲିଛି 'ଏ' ମାର୍କା ସିନେମା । ରିକ୍ସାଟିଏ ଡ଼ାକି ସେ ହଲ୍ ଆଡ଼େ ଚାଲିଲା ।

ହଲ୍ ଭିତରର ଅନ୍ଧାରରେ ପଦନା ବେଲର ଦେହରେ ହାତ ବଜାଉଥାଏ ତା'ର ପ୍ରତିକ୍ରିୟା କ'ଣ ଜାଣିବାପାଇଁ । କିଛି ସମୟପରେ ସେ ତା'ର ହାତ ଉପରେ ହାତ ରଖିଲା ଗୋଟେ କାମୋଦ୍ଦୀପକ ଦୃଶ୍ୟ ଦେଖିବାବେଳେ ଉଭୟଙ୍କର ଉଠିଥିଲା ଖରଶ୍ୱାସ । ବେଲର ମୁଣ୍ଡକୁ ନିଜ ଛାତିକୁ ଆଉଜେଇ ଆଣି ପଦନା ପଚାରିଲା - ଭଲ ଲାଗୁନି କି ? ବେଲ କିଛି ଉତ୍ତର ନଦେଇ କେବଳ ନିଜର ମୁଁହକୁ ତଳକୁ କରି ଦେଇଥିଲା । ତା'ମୁହଁକୁ ଉପରକୁ ଉଠାଇ ନିଜ ଆଡ଼କୁ ଆଉଜେଇ ଆଣି ଗୋଟେ ପ୍ରଗାଢ଼ ଚୁମ୍ବନ ଦେଲା । ସେଇ ଗୋଟିଏ ଚୁମ୍ବନରେ ବେଲ ଅନୁଭବ କଲା ତା' ଭିତରେ ଭାଙ୍ଗିବାକୁ ଯାଉଛି ସଂଯମର ବାଲିବନ୍ଧ । ସେ ପଦନାର ହାତକୁ ଜୋରରେ ମୁଠାଇଧରି କହିଲା - ଏଠି ଆଉ ବସିହେବନି ଚାଲ ପଳେଇବା ।

ଲଣ୍ଡନ୍‌ରୁ ଫେରିବାପରେ ବେଲ ଦେଖିଲା ସନା ଶୋଇଛି ଗୋଟେ କଅଁଳା ଛୁଆପରି ଜାକିଜୁକି ହୋଇ । ତା' ମନଭିତରେ ଦେଖିଥିବା ସିନେମାର ଦୃଶ୍ୟ । ମନେ ମନେ ଭାବିଲା ନା-ସ୍ୱାଠି କିଛି ହେବନି । ପଦନାକୁ ଡ଼ାକି କହିଲା ଏତ ଏଠି ଶୋଇଛି, ଚାଲ ତମ ରୁମରେ ବସି ଗପସପ ହେବା ।

ପଦନା ସହ ସାରାରାତି ବେଲ ଉପଭୋଗ କରିଥିଲା ତା'ର ବହୁଇପ୍‌ସିତ ସୁଖକୁ । ସେ ପଦନାକୁ କହିଲା ମୋତେ ଭିଡ଼ିଧର ମୋ ହାଡ଼ ମାଂସକୁ ତମେ ମେଞ୍ଚାଟିଏ କରିଦିଅ ଯେମିତି ଏତେଦିନ ଧରି ଭୋଗିଆସିଥିବା ଅତୃପ୍ତି ଥରକରେ ଶାନ୍ତ ପଡ଼ିଯାଉ ।

ରାତି ଭରି ରତି, ସକାଳକୁ ଦେହମନରେ କ୍ଲାନ୍ତ । ଅଥଚ ବେଲର ମନ ଭିତରେ ଉଡୁଥିଲା ଲକ୍ଷେ ପ୍ରଜାପତି । ବୈଶାଖର ପ୍ରଥମ ବର୍ଷାକୁ ଶୁଖିଲା ମାଟି ଛାତି ସାଇତି ରଖିଲା ପରି ବେଲ ସାଇତି ରଖିଥିଲା ଗତରାତିର ସୁଖକୁ ।

ଡ଼ାକ୍ତରଙ୍କ ପାଖରୁ ଫେରିବାପରେ ବହୁତଦିନ ଯାଏ ସେ ସ୍ୱପ୍ନାଚ୍ଛନ୍ନରହିଲା । ତାକୁ ଲାଗୁଥିଲା ତା' ଦେହର ସରସ ମାଟିର କୋଳରେ ମଞ୍ଜୀଟିଏ ଯେମିତି ଗଜା ଫୁଟିବାକୁ ଯାଉଛି । ମାତ୍ର ତା'ର ଭୟଥିଲା କାଳେ ସବୁକଥାକୁ ମିଛକରି ହୁଏତ ଅଚାନକ ଆସିପାରେ ତା' ସ୍ୱପ୍ନଭଙ୍ଗର ମୁହୂର୍ତ୍ତ, ନା - ସେମିତି କିଛି ହେଲାନି । ମାସେ ଗଲା ଅପେକ୍ଷାରେ, ଦୁଇମାସ ଗଲା ଅପେକ୍ଷାରେ ତଥାପି ଧୋବା ଘରକୁ ଲୁଗା ଗଲାନି । ନିଜ ଭିତରେ ଅଙ୍କୁରୁଥିବା ଇପ୍‌ସିତ ଭ୍ରୂଣଟି ବିଷୟରେ ନିଃସନ୍ଦେହ ହେବାପରେ ସେ ସନାକୁ କହିଲା ମୁଁ କେବେଠାରୁ କହୁଥିଲି ଡାକ୍ତରଙ୍କୁ ଦେଖାଇବା ପାଇଁ ସେବେଠୁ ଦେଖାଇଥିଲେ ଆମ କୋଳ ଆଜି ଖାଲିନଥାନ୍ତା । ଜାଣୁ ତୁ ବାପା ହେବାକୁ ଯାଉଛୁ ।

ସନା ବେଲର ମୁହଁକୁ ଚାହିଁ ନିର୍ଲିପ୍ତ ହସଟିଏ ହସିଲା, ସେ ତା' ହସରେ ଯେମିତି କହୁଥିଲା ସେ ଏମିତି ଏକ ଅଭାବିତ ଖବରରେ ଆଦୌ ଖୁସି ନୁହେ କି ଆଶ୍ଚର୍ଯ୍ୟ ବି ନୁହେ । ଆଉ କାହାକଥା ନଜାଣିଲେ ବି ସେ ନିଜକୁ ଭଲଭାବରେ ଜାଣେ ।

ତୁ ଏଥିରେ ଖୁସି ନୁହଁ ?

ହୁଁ, ମୁ ବହୁତ ଖୁସି । ଖୁସି ନୁହଁ ବୋଲି ତୁ କାହିଁକି ଭାବୁଛୁ ? ହେଲେ ଉଧାରୀ ପିତୃତ୍ୱରେ ଆଉ କେତେ ଖୁସି ହେବି ? - ମାନେ !

ଚନ୍ଦ୍ରସେଣା ରାଧାଙ୍କୁ ନଜାଣିଲେ ବି ନିଜକୁତ ଜାଣେ ।

# ଅନ୍ଧାରର ଚିତ୍ର

ସେ ଗାଳି ଶବ୍ଦରେ ମୋ ନିଦ ଭାଙ୍ଗେ, ମୁଁ ଏଠାରେ ଆସି ରହିବା ପରଠାରୁ ସବୁଦିନ ସେଇ ନିର୍ଦ୍ଦିଷ୍ଟ ପ୍ରକାରର ଗାଳି ଶୁଣି ମୋ ନିଦ ଭାଙ୍ଗି ଆସିଛି । କିନ୍ତୁ ସବୁଠୁ ବେଶି ଆଶ୍ଚର୍ଯ୍ୟ ହେଉଥାଏ ଗାଳିର ପ୍ରାପକ କିଏ କିମ୍ବା କାହା ଉଦ୍ଦେଶ୍ୟରେ ଏ ଗାଳି ମୁଁ ଜାଣିପାରୁ ନଥାଏ ବୋଲି । ପ୍ରଥମେ ପ୍ରଥମେ ଗାଳି ଶୁଣି ମୁଁ ଝରକା ଖୋଲି ଦେଖୁଥିଲି କିଏ ଝଗଡ଼ା ଲାଗୁଛନ୍ତି ମାତ୍ର ଏବେ ଆଉ ଝରକା ଖୋଲୁନି । କାରଣ ସେ ଗାଳି ସବୁ କାନରେ ବାଜିବା ବେଳକୁ ସକାଳ ହେବାକୁ ଆହୁରି ଅନେକ ଡେ଼ରିଥାଏ । ମାତ୍ର ସକାଳ ହେବା ପର୍ଯ୍ୟନ୍ତ ତା'ର ଅପେକ୍ଷା ନଥାଏ । ପାହାନ୍ତାରୁ ଉଠି ପବିତ୍ର ପାଣି ପାଇଁ ଗୋଟେ ମାଟି ଉଦ୍ଗେଇରେ ଗୋବର ପାଣି ଗୋଳାଉ ଗୋଳାଉ କେଉଁ ଅଦୃଷ୍ଟ ଉଦ୍ଦେଶ୍ୟରେ ସେ ଆରମ୍ଭ କରିଦେବ ତୁ କେଉଁ ଆସୁଥବୁରେ ପୋଡ଼ାମୁହାଁ ମୁଁ ପବିତ୍ର ପାଣି ଛିଞ୍ଚୁଛି । ଗଲୁତ ଗଲୁ ଏମିତି ଦହଗଞ୍ଜ କରି କାହିଁକି ଗଲୁ ? ରାଣ୍ଡ ହେବାକୁ ଯୋଗ୍ୟା କରିଗଲୁ ମୁଣ୍ଡ ହେବାକୁ ନୁହେଁ । ପେଟରେ ଛଅିଥିବା ଦି' ମାସର ଛୁଆକୁ ନେଇ ମୁଁ କେଉଁଠିକୁ ମୁଣ୍ଡ ହୋଇ ଯାଇଥାଆନ୍ତି ଆଉ ? ସବୁ ଦୁଃଖ ସହିଲି । ଦେହର ପାଣି ଦେହରେ ମାରିଲି । ଛାତିରେ ଶିଳ ଲଦିକରି ଶୋଇ ଶୋଇ ତୋ' ସନ୍ତକକୁ ଜନମ ଦେଲିରେ ବସ୍ୱାରଖିଆ । ଯାହାତ ଜମି ତୋ'ର ଥିଲାରେ ସତ୍ୟାନାସିଆ ସେଥିରେ ମାଆପୁଅ ଚଳିଥାଆନ୍ତୁ । ବାରଘର ପାଇଟି କରି ଚଢ଼େଇ ଛୁଆଙ୍କପରି ଅଧାର ଦେଇ ଛୁଆକୁ ପାଳିଲି । ତାକୁ ଛାତିରେ ଧରିଲା ବେଳେ ଥନ ଗୁଂଜିଲା ବେଳେ ଲାଗୁଥିଲା ତୁ ବାଡ଼ିଖିଆ ଯେମିତି ମୋ ପାଖେ ଅଛୁ । ତା'ମୁହଁ ଚାହିଁ କଟିଗଲା ବାଇଶି ବରଷ । ବାହାକଲି ଯେ ଗୋଟେ ସବାଖାଇଆସିଛି ଡ଼ାହାଣୀ ଚୋଷୁଛି ସାରା ରାତି ।

ପରବର୍ତ୍ତି ଦୃଶ୍ୟରେ ବୋହୁ ଉଠି ଆସବ ବିଛଣା ଛାଡ଼ି । ଅଳସ ହାଇଟିଏ ମାରି ସଜନା ଗଛ ମୂଳରେଥିବା ପାଣି ଡ଼ାଳେ ନେଇ ମୁହଁ ଧୋଇବ । ମୁହଁ ଧୋଇସାରି ଝାଡୁଧରି ଘର, ବାହାର, ଅଗଣା ଛାଡୁକରି, ଚୂଲିରେ ନିଆଁ ଧରାଇ ଚା'ବସାଇବ । ଘର ଭିତରକୁ ଯାଇ କହିବ ଉଠ-ବାସି ବିଛଣାରେ କାହିଁକି ଗଡ଼ ପଡ଼ ହେଉଛ, ଚା'ହେଲାଣି ।

ଲୋକଟି ହୁ-ଦସ୍ ଉଠି ଓଳି କଡ଼କୁ ଯିବ ପରିଶ୍ରା କରିବାକୁ । ସେତେବେଳେ ଯାଏ ଚାଲିଥିବା ଗାଳି

ଧିରେ ଧିରେ କମି କମି ଆସିବ । ଯେମିତି ପୁଅ ପରିଶ୍ରା କରି ଆସିବ ପାଣି ଢ଼ାଳେ ପୁଅ ହାତକୁ ବଢ଼ାଇ ଦେଇ ଠିଆ ହେବ । ସେ ମୁହଁ ଧୋଇ ସାରିଲେ କାନି ବଢ଼ାଇଦେବ ମୁହଁ ପୋଛିବାକୁ । ମାଆ ପୁଅ ବସି ଚା'ପିଇବେ । ବୋହୁ ପଚାରିବ ତରକାରୀ କ'ଣ କରିବ ଚାଉଳ କେତେ ପକାଇବ ଇତ୍ୟାଦି ସେସବୁ ଦେଖି ମୋତେ ଲାଗିବ ଏଇ କିଛି ସମୟ ପୂର୍ବରୁ ଯାହା ଶୁଣୁଥିଲି ସବୁମିଛ ଗୋଟେ ମିଛ ନାଟକର ସଂଳାପ ଥିଲା ।

ଚା'ପିଇସାରି ପୁଅ ଚାଲିଯିବ ନିତ୍ୟକର୍ମ ସାରି ଗାଧୋଇବାକୁ । ଶାଶୁ ବୋହୁ ମିଶି ତରତରରେ ରୋଷେଇ କରିବେ ପୁଅ ଖାଇ କାମକୁ ଯିବ । ପୁଅକୁ ବଳେଇ ବଳେଇ ଖୋଇବ ମାଆ । ବୋହୁକୁ କହିବ ଦେ ଆଉ ମୁଠେ ଦେ । ନଖାଇଲେ ଅଣ୍ଡିରି ପୁଅର ବଳ କେଉଁଠୁ ଆସିବ । ହେଇ ଖାଇଲା ଯେ ସଞ୍ଜକୁ ଯାଇଁ ଆସିବ । ପ୍ରେସ୍ କାମର ଖଟର ମଟରରେ କାନ ବଧିରା ଓ ହାତ ଗୋଡ଼ ଥକି ପଡୁଥିବ ।

ପୁଅ ଚାଲିଯିବ ପ୍ରେସ୍‌କୁ । ଶାଶୁ ବୋହୁ ମିଶି ଗପ କରିବେ, ଖାଇବେ । ହସଖୁସି ମଜା ଥଟ୍ଟାରେ ଘର କାମ କରୁଥିବେ ଦିନମାନ । ସଞ୍ଜବେଳକୁ ପୁଅ ଫେରିଲେ କିଛି ସମୟ ଗପ ସପ ଗହଳି ହେବ, ତାପରେ ଖାଇ ପିଇ ଶୋଇଯିବେ ସମସ୍ତେ । ପାହାନ୍ତାରୁ ଉଠି ଶାଶୁର ଆରମ୍ଭ ହୋଇଯିବ ସେଇ ଏକା ଗାଳି ସବୁଦିନ ।

ବହୁଦିନ ଯାଏ ଏକଥା ଦେଖିଲା ପରେ ମୋତେ ରହସ୍ୟ ଲାଗିଲା ଶାଶୁର ଚରିତ୍ର କେତେଥର ଭାବିଛି ତା'ପୁଅକୁ ପଚାରିବାକୁ, ପୁଣି ଭାବେ ମୋ ପଚାରିବାଟାକୁ ସେ ଯଦି ଅନ୍ୟ ଅର୍ଥରେ ନେଇ ଭାବେ ତାଙ୍କ ଘର କଥାରେ ମୁଁ କାହିଁକି ମୁଣ୍ଡ ପୁରାଉଛି ବୋଲି ? ତେଣୁ କେବେ ପଚାରିବାକୁ ସାହସ କରେନା । ଧିରେ ଧିରେ ଏ କଥାର ଗୁରୁତ୍ୱ ଓ ମୋର ଜାଣିବାର ଉତ୍‌କଣ୍ଠାକ ମଧ କମି କମି ଗଲା ।

ଦିନେ ମୁଁ ମୋ ରୁମ୍‌ରେ ବସିଛି ଶାଶୁ ଆସି ପହଞ୍ଚି କହିଲେ-ବାବୁ ଆମର ଗୋଟେ ଗାଇ ଛୁଆ ଦେଇଛି । ଭଲ କ୍ଷୀର ବି ଦେଉଛି । ଦେଖୁଛତ ଆମେ ମାଆ ପୁଅବୋହୁ ମିଶି ତିନିଜଣ । ଏତେ କ୍ଷୀର କ'ଣ କରିବୁ ? ଭାବୁଥିଲୁ କିଛି କିଛି ବିକିବୁ ବୋଲି । ତା'ପରେ ଆଜି କାଲିକା ମହରଗ ବଜାରରେ ସେଇ ଗୋଟିଏ ଛୁଆର ହାତକୁ ତିନି ତିନିଟା ପେଟ ଚାହିଁ ବସିଲେ ହେବନି । ସେ ବି

ସକାଳରୁ ସଞ୍ଜ ମେହନତ କରି କରି ଥକି ପଡୁଛି । ତେଣୁ କ୍ଷୀର ଟୋପେ ବିକିଲେ ଅନ୍ତତଃ ହାତକୁ ଦି' ପଇସା ଆସିଲେ ଭବିଷ୍ୟତ ପାଇଁ ରଖିହେବ । ଆଜିସିନା ଆମେ ତିନି, ଭଗବାନ କଲେ କାଲି ସକାଳକୁ କୁଟୁମ୍ବ ବଢ଼ିବେ । ମୁଁ କ'ଣ କହୁଥିଲି କି ତମେ କ୍ଷୀର ରଖିବକି ?

ମୁଁ କହିଲି-ମାଉସୀ ବସ ।

ନାଁରେ ପୁଅ ବସିବି କ'ଣ-ବୋହୁଟା ମୋର ଅସଜ ମଣିଷ । ଯେତେ ମନା କଲେବି ଧନି ହେଇ ପଡ଼ିବ କାମରେ । ତା'ଆଗରେ କାମ ପଡ଼ିଥିଲେ ସେ ହାତ ଗୋଡ଼ ଜାକି ବସି ପାରିବ ନାହିଁ । ତେଣୁ ମୋତେ ଆଗତୁରା ସବୁକାମ କରି ଦେବାକୁ ପଡୁଛି ।

ମାଉସୀ ଗୋଟେ କଥା ପଚାରିବି ବୋଲି ଭାବୁଛି-ଯଦି କିଛି ଖରାପ ନଭାବ ପଚାରିବି ।

ପଚାରୁନା-ଖରାପ କାହିଁକି ଭାବିବି ?

ଆଛା ମୁଁ ଏଠାରେ ରହିବା ଦିନଠାରୁ ଦେଖି ଆସିଛି ତମେ ରାତି ନପାହୁଣୁ ଉଠି ଗାଳି ଦେଉଥାଅ । ପ୍ରଥମେ ଭାବୁଥିଲି ପୁଅ ବୋହୁଙ୍କୁ ଗାଳି କରୁଥିବ ବୋଲି । ମାତ୍ର ସେମାନଙ୍କୁ ତମର ଭଲ ପାଇବା ଦେଖୁଛି । ତେବେ କାହାକୁ ଗାଳି କରୁଛ ଓ କାହିଁକି ?

ଥମ୍ ଥମ୍ ହୋଇଗଲା ତାଙ୍କ ମୁହଁ । ତାଙ୍କ ମୁହଁର ଭାବ ଦେଖି ମୁଁ ଭାବିଲି କେଉଁ ଗୋପନୀୟ ଦୁଃଖକୁ ମୁଁ ବୋଧେ ଉଖୁରାଇ ଦେଲି ।

ସେ ଉଠି ଠିଆ ହେଲେ ଯିବା ପାଇଁ-ଯାଉଁ ଯାଉଁ କହିଲେ ସାରା ରାତି ମୁଁ ମୋ ଦେହ ଓ ମନର ଇଚ୍ଛାକୁ ହତ୍ୟାକରେ ପଥର ଲଦି ଯେତେବେଳେ ମୁଁ ଭାବେ ଆରଘରେ ବୋହୁ କ'ଣ କରୁଥିବ । ରାତି ଭରି ସେମାନଙ୍କୁ ହତ୍ୟା କରି ମୋର ଦେହ, ମନ ସବୁ ରକ୍ତାକ୍ତ ହୋଇ ବାଇଶ ବର୍ଷର ବୈଧବ୍ୟ ଯନ୍ତ୍ରଣାକୁ ବୋହି ବୋହି ଚାଲିଛି । ଏବେ ମୋର ବୟସ କେତେକି ? ଚଉଦ ବର୍ଷରେ ବାହା ହୋଇଥିଲି । ଆଉ ପୁଅଟା ମୋର ତା' ବାପର ମୁହଁ, ହାତ, ଛାତି ସବୁକୁ ଅବିକଳ ଛଡ଼ାଇ ଆଣିଛି । ସବୁଦିନ ରାତିରେ ସେ ହିଁ ତ ଛିଡ଼ା ହୋଇଥାଏ ମୋ ମନଭିତରେ-ଅଥଚ ସେ ଥାଏ ଆର ଘରେ ।